# ଶ୍ରୀ ଜଗନ୍ନାଥ ଭଜନ ଶତକ

## ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ



# ଶ୍ରୀଜଗନ୍ନାଥ ଭଜନ ଶତକ

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ



ଏଥେନା ବୁକ୍‌ସ
ଭୁବନେଶ୍ୱର- ୨

# ଶ୍ରୀଜଗନ୍ନାଥ ଭଜନ ଶତକ

ଲେଖକ : ଡ. ଗୋବିନ୍ଦ ଚନ୍ଦ୍ର ଦାଶ



ପ୍ରକାଶକ : ଏଥେନା ବୁକ୍ସ, ଭୁବନେଶ୍ୱର-୨

ଅକ୍ଷରସଜ୍ଜା : ଜି.କେ. ପ୍ରିଣ୍ଟର୍ସ,
ସିଡ଼ିଏ - ୬ ମର୍କତ ନଗର, କଟକ,
ମୋ - ୮୨୪୯୮୧୮୪୧୭

ପ୍ରଚ୍ଛଦ : ଶିଳ୍ପୀ ଶଶିକାନ୍ତ ରାଉତ

ମୁଦ୍ରଣ : ଏଥେନା ବୁକ୍ସ, ଭୁବନେଶ୍ୱର-୨
rkdas.athena@gmail.com

ପ୍ରଥମ ସଂସ୍କରଣ : ୨୦୨୧

ମୂଲ୍ୟ : ଟ. ୧୩୦/-

ISBN : 13 978-93-80824-41-3

# ମୁଖବନ୍ଧ



ହୃଦୟର କେଉଁ ଏକ ନିଭୃତ କୋଣରେ ସଦା ପ୍ରତିବିମ୍ବିତ ହେଉଛି ପରମ ଆରାଧ୍ୟ ବିଶ୍ୱବଂଦିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅନୁପମ ରୂପଲାବଣ୍ୟର ପ୍ରତିଛବି । ଭକ୍ତି ଓ ଭାବର ଅପୂର୍ବ ସମନ୍ୱୟ ଘଟିଛି ନୀଳାଚଳଧାମରେ । ଏ ମାଟିକୁ ସ୍ପର୍ଶକଲାମାତ୍ରେ ମିଳାଇଯାଉଛି ଜନ୍ମଜନ୍ମର ରାଶିରାଶି ପାପ ଓ ଭାବସମୁଦ୍ରର ଅନନ୍ତ ବେଳାଭୂମିରେ କୋଟିକୋଟି ଦର୍ଶନାଭିଳାଷୀ ଭକ୍ତଙ୍କର ସମାବେଶ କେବଳ ସେହି ଶ୍ରଦ୍ଧାମୟ, ସ୍ୱପ୍ନମୟ, ବ୍ରହ୍ମମୟ ଭାବର ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚରଣକମଳରେ ଭକ୍ତିପୂତ ପ୍ରଣତି ଜଣାଇବା ପାଇଁ । ଚିନ୍ତା ଓ ଚେତନାର ଚୌହଦି ଭିତରେ ପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତମାନଙ୍କ ହୃଦୟରେ ଭରିଦେଉଛନ୍ତି ବିଶ୍ୱାସର ଗଭୀର ଆତ୍ମପ୍ରତ୍ୟୟ ଓ ଜୀବନ ଜିଇଁବାର ମହାମନ୍ତ୍ର । ଶ୍ରୀଜଗନ୍ନାଥ ଏମିତି ଠାକୁର ବିପଦରେ ଭକ୍ତର ଡାକ ତାଙ୍କ କାନରେ ବାଜେ । କାନ ନଥାଇ ସିଏ ଶୁଣିପାରନ୍ତି । ପାଦ ନ ଥାଇ ସିଏ ବୁଲୁଥା'ନ୍ତି ସଚରାଚର, ହାତ ନଥାଇ ସେ ଅଜାଡ଼ି ଦିଅନ୍ତି ଅଭୟ ଓ ପଲକ ପଡୁନଥିବା ଚକାଆଖିରେ ସେ ବିଶ୍ୱ ବ୍ରହ୍ମାଣ୍ଡକୁ ଦେଖିପାରନ୍ତି । ସେ ଭାବର ଠାକୁର ସର୍ବନିୟନ୍ତା, ସର୍ବଶକ୍ତିମାନ୍ ।

ମୋ ଚାକିରି ଜୀବନର ଶେଷ ଛଅବର୍ଷ କଟିଛି ପୁରୀରେ । ରୁଟିନବଂଧା କର୍ମ, ଜଂଜାଳମୟ ଜୀବନ ଭିତରେ ସମୟ ବାହାରକରି ପ୍ରଭୁଙ୍କର ଟିକେ ଦର୍ଶନ ପାଇଁ ମନଟା ଚଳଚଂଚଳ ହୋଇଉଠେ । ଦର୍ଶନ କରିସାରିବା ପରେ ମନରେ ଥିବା ଅନେକ ଦିନର ସ୍ୱପ୍ନ ବାସ୍ତବତାର ରୂପ ନିଏ । ମାନସିକ ଶାନ୍ତି, ସଦ୍‌ଭାବନା

ଶୁଦ୍ଧକରେ ଅନ୍ତଃକରଣକୁ ଓ ଜଗନ୍ନାଥମୟ ହୋଇଯାଏ ସାରା ପରିବେଶ । ଅବସର ନେବାର କିଛିବର୍ଷ ପରେ ମନକୁ ଆନ୍ଦୋଳିତ କଲା ସେଇ ଜଗତର ନାଥ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କିଛି ଗାୟନୋପଯୋଗୀ ଭଜନ ରଚନା କରିବା ପାଇଁ । ଲେଖୁଲେଖୁ ଶହେଟି ଭଜନ ଲେଖି ହୋଇଗଲା । କରୋନା ମହାମାରୀ ସମୟରେ ଗୃହବଂଦୀ ଭାବରେ ସମୟ କାଟୁଥିଲା ବେଳେ ପ୍ରଭୁଙ୍କ ଭକ୍ତି ନିବେଦନ ସକାଶେ ଏହି ଭଜନଗୁଡ଼ିକ ରଚନା କରିଛି । ପାଠକମାନଙ୍କ ଭିତରେ ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

ମୋ ପରିବାରର ସମସ୍ତ ସଦସ୍ୟ ମୋତେ ପୁସ୍ତକ ପ୍ରକାଶନ ପାଇଁ ଉତ୍ସାହିତ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛି । ବିଶେଷକରି ମୋର ଦୁଇଟି ଛୋଟଛୋଟ ନାତି, ନାତୁଣୀ ଗିଗିଲ୍ ଓ ବାନୀଙ୍କ ଉପସ୍ଥିତି ପୁସ୍ତକ ରଚନା କରିବାରେ ବାଧକ ସାଜିନି ବରଂ ପ୍ରେରଣା ଯୋଗାଇଛି । ସେମାନଙ୍କୁ ମୋର ଅନ୍ତରର ଅଜସ୍ର ଆଶୀର୍ବାଦ । ପରିଶେଷରେ ଏଥେନା ବୁକ୍ସର ଶ୍ରୀଯୁକ୍ତ ରାଜକିଶୋର ଦାସ ପୁସ୍ତକ ପ୍ରକାଶନର ଦାୟିତ୍ୱ ନେଇ ପୁସ୍ତକକୁ ଏକ ପୂର୍ଣ୍ଣାଙ୍ଗ ରୂପ ଦେଇଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ମୋର ଭକ୍ତି ନୈବେଦ୍ୟ ଅର୍ପଣ କରି ରହୁଛି ।

॥ ଜୟ ଜଗନ୍ନାଥ ॥

ଦୋଳ ପୂର୍ଣ୍ଣିମା
ତା ୨୯.୧.୨୦୨୧

ଗୋବିନ୍ଦ ଚନ୍ଦ୍ର ଦାଶ




ଇଚ୍ଛାମୟ ହେ ! ତୁମ ଇଚ୍ଛାରେ ଚାଲିଛି ଏ ଜଗତ
ଏଇ ସଂସାରେ ସଭିଏଁ ଆତଜାତ ।୦।

ଜଗତର ଈଶ ଆହେ ଜଗଦୀଶ
ତୁମେ ତ ଆରମ୍ଭ ତୁମେ ଇ ତ ଶେଷ
ଜୀବନ ଯାତ୍ରାର ପ୍ରତିଟି ପାହାଚ
ପରେ ଯେବେ ହୁଏ ମନେ ଦେଦୋପାଂଚ
ନିଃଶବ୍ଦରେ ତୁମେ ହାତଧରି ମୋର
ଆଗକୁ ଦେଖାଅ ଚାଲିବାର ପଥ ।୧।

ଯେତେ ଦୁଃଖ ଆସେ ଯେତେକ ଯାତନା
ସବୁ ଖାଲି ମୋର ଭାଗ୍ୟ ବିଡ଼ମ୍ବନା
ତୁମ ପରଶରେ ସବୁ ହୁଏ ଲୀନ
ଏ ଧରଣୀ ହୁଏ ଖାଲି ପାପ ଶୂନ୍ୟ
ଭକତି ଟିକିଏ ଘେନାକର ମୋର
ପୂର୍ଣ୍ଣକର ପ୍ରଭୁ ମୋର ମନୋରଥ ।୨।



ଭାବମୟ ହରି ଭାବ ଲଗାଇଲ କାହିଁ
ଛୁଇଁବାକୁ ଇଚ୍ଛା କଲେ ହାତ ପାଉନାହିଁ ।୦।

ଜାତି ଜାତି ଫୁଲ ଫୁଟେ ତୁମରି ନିର୍ଦ୍ଦେଶେ
ମାଳ ମାଳ ମେଘ ଦିଶେ ସୁନ୍ଦର ଆକାଶେ
ଧାରଧାର ଲୁହ ବହେ ଖାଲି କାନ୍ଦିକାନ୍ଦି
ଆସ ପ୍ରଭୁ ଜଗନ୍ନାଥ ମୋ ଅନ୍ତର ଭେଦି
ଯେତେ ଡାକିଲେ ବି କାହିଁକି ଶୁଣୁନ
ଯାଉଛ ମୋ'ଠୁ ଦୂରେଇ ।୧।

ତୁମେ ତ ଜାଣିଛ କେତେ ପାପ ମୁଁ କରିଛି
ତୁମେ ତ ଦେଖିଛ କେତେ ଦୁଃଖ ମୁଁ ସହିଛି
ଟିକିଏ କରୁଣା ପାଇଁ ରହିଛି ଅନାଇ
ଦୋଷାଦୋଷ କ୍ଷମାକର ହେ ଜଗତ ସାଇଁ
ଆହେ କ୍ଷମାନିଧି କରୁଣା ବାରିଧି
ମୋ ଡାକ କି ଶୁଭୁନାହିଁ ।୨।





ଦାରିଦ୍ର୍ୟ ଭଂଜନ ଆହେ ଭକତର ସଖା
ମାନସ ରଂଜନ ପ୍ରଭୁ ଦିଅ ତୁମ ଦେଖା
ଶୁଭୁନାହିଁ ମୋର ଡାକ ହେଉଛ କାହିଁ ବିମୁଖ
ଦୁଃଖେ ଗଲି ଅନୁସରି ସବୁ କଷ୍ଟ ସହି ସହିକା ।୦।

କାମ କ୍ରୋଧ ଲୋଭ ମୋହ କରେ କବଳିତ
ଜୀବନର ପଥ କଲ କାହିଁ କଣ୍ଟକିତ
ଡାକି ଡାକି ଗଲି ସରି ଆହେ ଗୋଲୋକବିହାରୀ
ପୁଲକ ପସରା ତୁମ ଖୋଲିଦିଅ ହସିହସିକା ।୧।

ଦେହରେ ମୋ ଶକ୍ତି ଦିଅ ଅନ୍ତରେ ଭକତି
ଓଠରେ ମୋହର ହସ ଦିଅ ଲଭେ ମୁହିଁ ଶାନ୍ତି
ଧନ୍ୟ ହେବ ଏ ଜୀବନ ଦେଖା ତୁମ ପାଇ ପାଇକା ।୨।



ଜାଣିଛ କି ବଂଧୁ ଜାଣିଛ କି ?
ସେ ଚକା ଆଖିକୁ ଜାଣିଛ କି ? ।୦।

ସତ୍ୟ, ଶାନ୍ତି, ଦୟା, କ୍ଷମାର ଭଣ୍ଡାର
ଭରିଦିଅ ହୃଦେ ଆନନ୍ଦ ଅପାର
ଝରିଯାଏ କଣ୍ଠୁ କରୁଣାର ଝର
ସବୁଠାରେ ଶୁଭେ ତୁମ୍ଭ କଣ୍ଠସ୍ୱର
ତୁମେ ମୋ ଆଶରା ସ୍ନେହର ପସରା
ମୋ ପାଇଁ କେବେ ଖୋଲିଛ କି ? ।୧।

ତୁମ ନାମ ଧରି ବିତାଉଛି ଦିନ
ତୁମ ଗୁଣ ଗାଇ ଯାଉ ଏ ଜୀବନ
ତୁମେ ଅବତରୀ ଏଇ ଧରା ଧାମେ
ବିଭୋର ଏ ମନ ତୁମ ନାମ ପ୍ରେମେ
ସବୁ ତ ଜାଣିଛ ନିରବ ରହୁଛ
କାହିଁକି ମୋତେ କହିବ କି ? ।୨।



ନିଜର ରୂପର ତୁମେ ନିଜେ ରୂପକାର
ଚକାଚକା ଦୁଇଆଖି ହେ କଳାଠାକୁର ।୦।

ବିଚିତ୍ର ତୁମର ଲୀଳା
ପାଏ ନାହିଁ ତା'ର ଆଦି ଅନ୍ତ
ସର୍ବମୟ କର୍ତ୍ତା ତୁମେ
ଜୀବନର ଅନାଦି ଅନନ୍ତ
ମାୟାରେ ମୋହିତ କର ଆହେ ନିରାକାର ।୧।

ଦିନ ମୋର ବିତିଯାଏ
ତୁମ ପ୍ରେମେ ନାଚୁଥାଏ ମନ
ନିରାଶ କରନା ମୋତେ
ପ୍ରାଣପ୍ରିୟ ପତିତ ପାବନ
ବାରେ ଶୁଣ ମୋ ଗୁହାରି, ବ୍ୟଥା, ହାହାକାର ।୨।



କାଳିଆ ସୁନା !
ଏଡ଼ିକି କୃପଣ ତୁହି, କୃପା ଟିକେ ଦେଲୁ ନାହିଁ
ଯେତେ ବୁଝାଇଲେ କାହିଁ ଏ ମନ ବୁଝେନା ।୦।

ନନ୍ଦିଘୋଷ ରଥେ ବିଜେ ମୋହନ ମୂରତି
ବଡ଼ଦାଣ୍ଡେ କରୁ ଲୀଳା ହେ ଜଗତ ପତି
ଚକା ଆଖିରେ ଦେଖୁଛୁ ଚଉଦ ବ୍ରହ୍ମାଣ୍ଡ
ମାଳ ମାଳ ଭକ୍ତ ଆସି ହୋଇଛନ୍ତି ରୁଣ୍ଡ
ଯେତେ ଦେଖୁଥିଲେ ନୂଆ ନୂଆ ଦିଶୁ
ପେଟ ପୂରେନା ।୧।

ଯେ ଦେଖିଛି ତୋର ଭୁବନ ମୋହନ ବେଶ
ତା' ଅନ୍ତରୁ ଦୂରେଇଛି କାଳିମା କଳୁଷ
ପବିତ୍ର ହୋଇଛି ତା'ର ନୟନ ଯୁଗଳ
ତା' ଲୁହରେ ବଂଧା ତୋର କୃପା ଢଳଢଳ
ବରଷକେ ଥରେ ରଥ ଯାତରାକୁ
ଭୁଲି ହୁଏନା ।୨।




କେଉଁ ନାମ ଧରି ଡାକିବି ତୁମକୁ ଶ୍ରୀଜଗନ୍ନାଥ
କେଉଁ ବାଟ ଦେଇ ଚାଲିବି ଆଗକୁ ଦେଖାଅ ପଥ ।୦।

ଚାଲୁଚାଲୁ ଝୁଣ୍ଟିଲେ ପଡ଼ିଲେ
କେହି କରିବେନି ଆହା
ଦୁଃଖ ଶୋକ ଭରା ଏ ଜୀବନେ
ତୁମେ ହିଁ କେବଳ ସାହା
ସରିଆସେ ଦିନ ଆହେ ଭଗବାନ
କେମିତି ଚଳିବ ଶରୀର ରଥ ।୧।

ଆଶା ଓ ଆଶଙ୍କା ଭିତରେ ମୁଁ
ହୁଏ ଖାଲି କଲବଲ
ଜାଣି ମୁଁ ପାରେନି କାହିଁକି ବା
କିଏ ଭଲ କିଏ ଭେଲ
କେଡ଼େ ହୀନିମାନ ଜୀବନ ମୋହର
କରିଛ କାହିଁକି ଜଗତ ନାଥ ।୨।



କେଉଁ ମାୟା ଲଗାଇଛ ମାୟାଧର
ଯନ୍ତ୍ରଣା ଦେଉଛ କାହିଁ ଲଗାତର ।୦।

ଜୀବନେ ଅର୍ଜିଛି ଯେତେ ପୁଣ୍ୟ ଆଉ ଯେତେ ପାପ
ସେସବୁ ତୁମରି ଆଶୀର୍ବାଦ କିବା ଅଭିଶାପ
ଏଡ଼ିକି ଅଧମ ଜାଣି ମୁଁ ପାରୁନି କ୍ଷମାକର
ଯେତେ ଯାହା ମୋର ଅଭିଳାଷ ତାକୁ ପୂର୍ଣ୍ଣକର
ସବୁ ଜାଣିଶୁଣି କାହିଁକି କେଜାଣି
ଦୁଃଖରେ କରୁଛ ଜରଜର ।୧।

ତୁମ ନାମ ଗାଇ କେତେ ଋଷିମୁନି ଆନନ୍ଦିତ
ତୁମରି ଚରଣେ ଭକ୍ତି ଅର୍ଘ୍ୟ ଢାଳି ସମର୍ପିତ
କାହିଁକି ନିଷ୍ଠୁର ମୋ ପାଇଁ ହେଉଛ ଚକାଆଖି
କାହିଁକି ଛଳିଆ ଏଡ଼େ କପଟିଆ କହିବକି
ତୁମେ ତ ଜୀବନ ତୁମେ ତ ଜୀବିକା ତୁମେ ହିଁ
ଦୟାର ପାରାବାର ।୨।



ଅଖିଳ ବ୍ରହ୍ମାଣ୍ଡ ପତି ବହିଅଛ ନାମ
ପ୍ରାଣଠାରୁ ପ୍ରିୟ ମୋର ହେ ପୁରୁଷୋତ୍ତମ ।୦।

ଘାସଠୁ ନରମ ତୁମେ ଫୁଲଠୁ କୋମଳ
ଜଳଠୁ ତରଳ ତୁମେ ବାୟୁ ସୁଶୀତଳ
ଜ୍ଞାନଠୁ ଉଜ୍ଜ୍ୱଳ ତୁମେ ମନଠୁ ଚଞ୍ଚଳ
ଜନ୍ମଠୁ ଜୀବନ୍ତ ତୁମେ ମୃତ୍ୟୁ ମହାକାଳ
ସବୁ ଆତଯାତ ତୁମରି ନିର୍ଦ୍ଦେଶେ ଦୟାମୟ ଆତ୍ମାରାମ ।୧।

ବୋଲାଉଛ ତୁମେ ପରା ଜଗତକରତା
ଆହେ ଆତ୍ମାଧୀଶ ଦିଅ ବିଶ୍ୱର ବାରତା
ଅଜ୍ଞାନ ତିମିର ଘେରା ସସାଗରା ଧରା
ଖୋଜୁଛି ମୁକ୍ତିର ମାର୍ଗ ଆଲୋକରେ ଭରା
ଅଗତିର ଗତି ତୁମେ ଅଶେଷର ଶେଷ ଆହେ ସର୍ବନାମ ।୨।



ହଟିଆ ଠାକୁର ତୁହି କି ମନ୍ତର ଜାଣୁ
ଡାକିହାକି ଭକତଙ୍କୁ ତୋ ପାଖକୁ ଆଣୁ ।୦।

ଅମୃତ ଝରଇ ହୃଦୁ ତୋ ନାମ ଧରିଲେ
ଆପଦ ବିପଦ ଟଳେ ତୋତେ ଡାକିଦେଲେ
ଭଜିଭଜି ତୋର ନାମ ଆରତନାଶନ
ଏ ଅଧମ ଜୀବ ଧାଉଁ ତୋର ଶ୍ରୀଚରଣ
ଆରତେ ବସିଛି ଚାହିଁ ତୋର ଦରଶନ ପାଇଁ
ଦିନ ଗଣୁଗଣୁ ।୧।

ତୋ ସେବାରେ ଦିନ ଯାଉ ଏତିକି ମାଗୁଣି
ଅଜଣା ହେଉଛୁ କାହିଁ ସବୁ ଜାଣିଶୁଣି
ପତିତ ପାବନ ବାନା ଉଡୁଛି ତୋହରି
ଶୁଣୁନାହୁଁ କାହିଁକିରେ ଏ ଦୀନ ଗୁହାରି
ମନ ମୋ ମୋହିଲୁ କି ମାୟାରେ ଏ ଜୀବ ଯାଉ ତୋ
ନାମ ଶୁଣୁଶୁଣୁ ।୨।



ଦେଖାଅ ପ୍ରଭୁ ତୁମର ଦାରୁବ୍ରହ୍ମ ରୂପ
ଧୋଇଯାଉ ଯେତେସବୁ କରିଥିବା ପାପ ।୦।

କାହାକୁ କହିବି ଦୁଃଖ
ହେ ମୋର କଳାଶ୍ରୀମୁଖ
ତୁମରି ଦର୍ଶନେ ଯେତେ
ଦୁଃଖ ସବୁ ହୁଏ ସୁଖ
ଜୀବନରୁ ହଟିଯାଏ ଧୀରେଧୀରେ
ସବୁ ଅଭିଶାପ ।୧।

ତୁମରି ପାଖରେ ମୋର
ଏତିକି କରେ ମାଗୁଣି
ସବୁ ଅଳି ଶ୍ରୀଛାମୁରେ
କରିଛି ମୁଁ ଜାଣିଜାଣି
ତୁମ ନାମ ଜପିଜପି ଲିଭିଯାଉ
ଜୀବନ ପ୍ରଦୀପ ।୨।



ଆଞ୍ଜୁଳାଏ ଭକ୍ତି ରଖିଅଛି ପ୍ରଭୁ
ତୁମକୁ ପୂଜିବା ପାଇଁ
ଦରଶନ ଟିକେ ମାଗୁଅଛି ମୁହିଁ
ଧନଜନ ଲୋଡ଼ା ନାହିଁ ।୦।

ରତନ ବେଦୀରେ ରତ୍ନ ସିଂହାସନେ
ବସିଅଛ ପ୍ରଭୁ କାହିଁକି ମଉନେ
ଡାକିଡାକି ମୋର ତଣ୍ଟିଯାଏ ଶୁଖି
ଧାରଧାର ଲୁହ ପାଉନକି ଦେଖି
କେତେ ଯେ କରିବି ପୂଜାପାଠ ଆଉ
ଥରେ ଦିଅ ମୋତେ କହି ।୧।

ବାଇଶି ପାହାଚ ଉପରେ ବସିଛି
ନୀଳଚକ୍ର ନେତ ଅନାଇ ଦେଖୁଛି
ଶୁଭୁଛି ସବୁଠି ତୁମ ନାମ ଗାନ
ଭେଦିଯାଏ ସାରା ଗଗନ ପବନ
ଯୁଆଡ଼େ ଚାହୁଁଛି ସବୁଆଡ଼େ ଖାଲି
ତୁମ ଶ୍ରୀମୁଖ ଦିଶଇ ।୨।





ବଡ଼ ଦେଉଳେ ବସିଛ ବଡ଼ଠାକୁର
ଜାଣିପାରୁଛ ସହଜେ ଭକ୍ତ ଅନ୍ତର ।୦।

ସବୁ ପାପ ଯାଏ ଧୋଇ
ତୁମ ଦରଶନେ
ସବୁ ରାତି ଯାଏ ପାହି
ତୁମ ଦିବ୍ୟଜ୍ଞାନେ
ଅସରାଏ କୃପାବାରି ଢାଳିଦିଅ ହେ ମୁରଲୀଧର ।୧।

ଜୀବନର ଗତି ମୋର
ଆହା କି ଜଟିଳ
କେବେ ତା'ର ଇତି ହେବ
ଆସିବ ସେ କାଳ
ନୀଳଚକ୍ରେ ଚାହିଁ ଚାହିଁ ଚାଲିଯାଉ ଏ ଜୀବନ ମୋର ।୨।



କୋଟି କୋଟି ତୀର୍ଥ ଲୁଚିକି ରହିଛି
ବଡ଼ଦାଣ୍ଡେ ରେଣୁ ହୋଇ
କେତେ କେତେ ପାପୀ ମୁକତି ଲଭନ୍ତି
ସେ ରେଣୁକୁ ଛୁଇଁଦେଇ ।୦।

ବାଇଶି ପାହାଚ ପରେ ଘଡ଼ିଏ ବସିଲେ
ଭୋକ ଶୋଷ ଲାଗେ ନାହିଁ କିଛି ନ ଖାଇଲେ
ଗରୁଡ଼ ସ୍ତମ୍ଭ ପଛରେ ନିରେଖି ଚାହିଁଲେ
ଶ୍ରୀମୁଖ ଦିଶେ ତୁମ୍ଭର ହାତ ଟେକି ଦେଲେ
ଧନ୍ୟ ତୁମ ଚକା ଆଖି ମନ ମୋର ଯାଏ ଲାଖି
ସରଗର ସୁଖ ପାଇ ।୧।

ତୁମର ସୃଷ୍ଟି ପ୍ରଭୁ କେଡ଼େ ମଧୁମୟ
ତୁମ ଦରଶନେ ମିଳେ କେତେ ଯେ ଅଭୟ
ଶରଧାବାଲିରେ ଥରେ ଗଡ଼ିଯାଏ ଯିଏ
ତା' ଦେହରୁ ସବୁ ପାପ ଧୋଇ ହୋଇଯାଏ
ଗଗନ ପବନ ସୁରଭିତ କରି ପ୍ରଭୁ ତୁମେ
ଆସ ସରଗୁ ଓହ୍ଲାଇ ।୨।



କଳାମେଘ ସମ ଦଶୁଅଛ ସତେ ତୁମେ କାଳିଆ
ରଙ୍ଗ ଅଧରରେ ଦିଶକି ସୁନ୍ଦର ନୀଳାଚଳିଆ ।୦।

ଠକି ଚାଲିଥିବ କେତେ ଦିନ ଆଉ କହିବକି
ବଡ଼ଦାଣ୍ଡେ ତୁମ ଠିଆ ହୋଇଅଛି ଦେଖୁନ କି
ହୃଦୟେ ରଖିଛି କେତେ ଯେ ଯାତନା ସାଇତିକି
ଗୋଟିଗୋଟି କରି ସବୁ ଜଣାଇବି ହାତଟେକି
ନିଦର ପହଡ଼ ଭାଙ୍ଗି ଉଠ ପ୍ରଭୁ ଚକାଆଖି
ଡାକିଡାକି ଗଲିସରି, ତୁମେ ସତେ କେଡ଼େ ଛଳିଆ ।୧।

କେତେ ଯେ ସୁନ୍ଦର ତୁମ ନୀଳାଚଳଧାମ
ତା’ ଭିତରେ ଶ୍ରୀମନ୍ଦିର କେଡ଼େ ମନୋରମ
ରତ୍ନସିଂହାସନ ତୁମ ସ୍ୱର୍ଗର ନନ୍ଦନବନ
ଆନନ୍ଦବଜାର ଅନ୍ନ ତୁମ ଅମୃତ ସମାନ
ସେ ଅବଢ଼ା ଅନ୍ନ ପାଇ କେଡ଼େ ଧନ୍ୟ ହେବି ମୁହିଁ
ସବୁ ଜାଣି ମଉନ କିଂପା ପଭୁ କେଡ଼େ କପଟିଆ ।୨।



କେଡ଼େ କପଟିଆ ପ୍ରଭୁ କେଡ଼ିକି ଛଳିଆ
ମଣିଷ ଗଢ଼ିଛ ଏଠି ଭଳିକି ଭଳିଆ ।୦।

ଏ ଜୀବନ ଧନ୍ୟ ହେବ ତୁମ ମୁଖ ଚାହିଁ
ତୁମ ନାମ ଗାଉଥିବି ଦିନରାତି ମୁହିଁ
ମଣିମା ମଣିମା ଡାକ ଚାରିଆଡ଼େ ଶୁଭେ
କୃପାସିନ୍ଧୁ କୃପାକର ଡାକନ୍ତି ସରବେ
ତୁମ ଅପରୂପ ଛବି ଦେଖି ମୁହିଁ ଧନ୍ୟ ହେବି
ଆହେ ମୋର ଗଳାମାଳିଆ ।୧।

ପିଣ୍ଡରେ ପ୍ରାଣ ମୋର ତୁଣ୍ଡେ ତୁମ ନାମ
କାହିଁଗଲ ପ୍ରାଣପ୍ରିୟ ଆହେ ସର୍ବନାମ
ବଂଚିତ କରନି ମୋତେ ତୁମ କରୁଣାରୁ
ଅନ୍ତର କରନି ମୋତେ ତୁମରି ସେବାରୁ
କଇବଲ୍ୟ କଣିକାରୁ କାଣିଚାଏ ଦିଅ ମୋତେ
ନୀଳବ୍ରହ୍ମ ନୀଳାଚଳିଆ ।୨।



ଏ ପିଣ୍ଡରେ ବ୍ରହ୍ମମୟ ବ୍ରହ୍ମାଣ୍ଡ ଦିଶଇ
ଏ ତୁଣ୍ଡରେ ତୁମ ନାମ ଘୋଷି ହେଉଥାଇ ।୦।

ମାୟାଜାଲେ ଆବୋରିଛ ସାରା ସଂସାରକୁ
କେତେ କେତେ ଋଷିମୁନି ମନ ଜାଣିବାକୁ
ଭକ୍ତର ପରୀକ୍ଷା ପ୍ରଭୁ କାହିଁପାଇଁ କର
କୁହ ପ୍ରଭୁ କିଏ ନିଜ କିଏ ପୁଣି ପର
କରୁଣାର ଅବତାର ଆହେ ଚକ୍ରଧର
ଚକ୍ର ଉହାଡ଼ରେ ଭକତଙ୍କୁ ତୁମ ରଖିଛ ଘୋଡ଼ାଇ ।୧।

ଏ ଘଟକୁ ମୋର ଆସ ନିମିଷକ ପାଇଁ
ମୋହଗ୍ରସ୍ତ ମନ ମୋର ମୁକ୍ତି ଖୋଜୁଥାଇ
କାମନା ବାସନା ଯେତେ ମୋଠାରୁ ଛଡ଼ାଇ
ତୁମ ପଦେ ଆଶ୍ରା ଦିଅ ଆହେ ଭାବଗ୍ରାହୀ
ଦୟାର ସାଗର ପ୍ରଭୁ ନହୁଅ ନିଷ୍ଠୁର
ବଡ଼ଦାଣ୍ଡେ ତୁମ ରେଣୁ କରିଥାଅ ସବୁଦିନ ପାଇଁ ।୨।




ଚକାଚକା ଆଖି ବୋଲି ତୁମେ ଚକା ଆଖି
ଆଖି ମୋ ପବିତ୍ର ହେଲା ସେ ରୂପକୁ ଦେଖି ।୦।

ଶିଶୁର ଦରୋଟି ହସ ଫୁଟନ୍ତା ଫୁଲର ବାସ
କଅଁଳ ଘାସର ସ୍ପର୍ଶ ଉପରେ ନୀଳ ଆକାଶ
ଜଳରେ ଭରିଛି ପ୍ରାଣ ମନଟି ଅଟେ ଚଂଚଳ
ସମୀର ବହେ ଶୀତଳ ଝରଣାର ସ୍ୱଚ୍ଛଜଳ
ସବୁ ତ ତୁମରି ସୃଷ୍ଟି ଆକର୍ଷି ନେଉଛି ଆଖି ।୧।

ଦିନରାତି ହୁଏ ଏଠି ଖାଲି ତୁମରି ନିର୍ଦ୍ଦେଶେ
ଯେଣିକି ଚାହିଁଲେ ସେଣେ ତୁମ ଶ୍ରୀମୁଖଟି ଦିଶେ
କାହାକୁ କରୁଛ ଦୟା କା' ଠାରେ କରୁଛ ମାୟା
କାହାକୁ କର ପରୀକ୍ଷା କାହାକୁ କରୁଛ ରକ୍ଷା
ଯାହାବି କରୁଛ ତୁମେ ଅନ୍ତରେ କପଟ ରଖି ।୨।







ଚାଲଯିବା ନୀଳାଚଳକୁ
ଦର୍ଶନ କରିବା ସେହି ଦାରୁବ୍ରହ୍ମଙ୍କୁ ।୦।

ଶବ୍ଦ ଆସେ ନିଃଶବ୍ଦରେ ଦେହ ମନ ଶିହରାଇ
ସେ ଶବ୍ଦର ଦିଗବାରି ତୁମକୁ ମୁଁ ଖୋଜୁଥାଇ
ଶରଧାବାଲିରେ ପାଦ ରଖିଦେଲେ ଥରେ ମୁହିଁ
ପ୍ରତିଟି ରେଣୁରେ ପ୍ରଭୁ ତୁମକୁ ମୁଁ ଦେଖୁଥାଇ
ତୁମ ଶ୍ରୀଚରଣେ ରହି ଏ ମନ ଚାହୁଁଛି ଖାଲି
ତୁମ ଶ୍ରୀମୁଖକୁ ।୧।

ଭାବକୁ ନିକଟ ହୁଅ ଅଭାବେ ଦୂରେଇ ଯାଅ
ଅନାଥର ନାଥ ହୋଇ ସ୍ନେହରେ କୋଳେଇ ନିଅ
ତୁମ ଯଶଗୀତି ଗାଇବାକୁ ଦିଅ ମୋତେ ଶକ୍ତି
ତୁମ ନାଁ ତୁଣ୍ଡେ ଧରିବାକୁ ଅନ୍ତରେ ଦିଅ ଭକ୍ତି
ସବୁ ଦୁଃଖ ମୋର ଚାଲିଯାଏ, ଚାହିଁଦେଲେ ତୁମ
କଳା ବଦନକୁ ।୨।



କୃପାସିନ୍ଧୁ ହେ ! ତୁମେ କୃପାସାଗର
ତାରିଲେ ତାରିବ ମାରିଲେ ମାରିବ
ତୁମ ଛଡ଼ା ସାହା କେହି ନାହିଁ ମୋହର ।୦।

ବଡ଼ଦାଣ୍ଡେ ଠିଆ ହୋଇ ଚାହିଁଦେଲେ ଶ୍ରୀମନ୍ଦିର
ଚାରିଆଡ଼େ ଦିଶୁଥାଏ ତୁମ ଶ୍ରୀମୁଖ ସୁନ୍ଦର
ପତିତପାବନ ବାନା ଉଡୁଥାଏ ଫରଫର
ବାଇଶି ପାହାଚେ ମିଳିଯାଏ ସୁଖ ସରଗର
ବଂଚିତ କରନି ପ୍ରଭୁ ମଣିମା ଡାକରୁ, କରନି ସେବାରୁ ଅନ୍ତର ।୧।

କେଡ଼େ ସୁଆଦିଆ ସତେ ତୁମର ଅବଢ଼ା ଅନ୍ନ
ଯାହାକୁ ଟିକିଏ ମିଳେ ସିଏ କେଡ଼େ ଭାଗ୍ୟବାନ
ରଂଗ ଅଧରର ହସେ ମନ ମୋର ଯାଏ ଲାଖି
ମାୟାରେ ମୋହିତ କର କଳାକଳା ଚକାଆଖି
ଯେତେ ଶୀଘ୍ର ପାର ଶେଷ କର ଖେଳ, ବଡ଼ଦେଉଳର ବଡ଼ ଠାକୁର ।୨।



ଆହେ ଜଗନ୍ନାଥ ! ଟିକିଏ ନିରେଖି ଦେଖ
ଡାକିଡାକି ତଣ୍ଟି ପଡ଼ି ତ ଗଲାଣି
ତୁମ ଭୁଜ ତଳେ ମୋତେ ରଖ ।୦।

ବଡ଼ ଅଝଟିଆ ଏ ମନ କାଳିଆ
ମାନୁନାହିଁ ମୋତେ ବଡ଼ ଦଗାଦିଆ
କେମିତି ଡାକିଲେ ଶୁଣିବ ମୋ କଥା
ଅନ୍ତରରୁ ନେବ ଯେତେ ସବୁ ବ୍ୟଥା
ଯେତେ ସ୍ୱପ୍ନ ସବୁ ସାକାର କରିବ ହରିବ ଦାରୁଣ ଦୁଃଖ ।୧।

ଜୀବନଦୀପ ମୋ ଲିଭିଆସିଲାଣି
ଡାକିଡାକି ମୋର ତଣ୍ଟି ଶୁଖିଲାଣି
ଜଣାଏ ତୁମକୁ ମୋ ଦୁଃଖ ଗୁହାରି
ଚାଲୁଛି ମୁଁ ତୁମ ପଥ ଅନୁସରି
କେବେ ଦେଖାଦେବ ମୋ ଦୁଃଖ ହରିବ କୁହହେ ପଙ୍କଜମୁଖ ।୨।



ମହାବାହୁ, ଆହେ ମହାବାହୁ !
ନେଇଯାଅ ତୁମ ପାଶେ ପ୍ରଭୁ
ହାତଗୋଡ଼ ଚଳୁ ଥାଉଥାଉ ।୦।

ଯେତେ ଦୁଃଖ ଆଉ ଯାତନା ଦେଇଛ
ସବୁ ତ ସହି ନେଇଛି
ଯେତେ ଯେତେ ପୁଣ୍ୟ ଅର୍ଜିଛି ଜୀବନେ
ସବୁକୁ ତୁଚ୍ଛ କରିଛି
ତୁମେ ତ ଈଶ୍ୱର ଏ ସାରା ବିଶ୍ୱର ଦେଖାଦିଅ ଟିକେ
ଜୀବ ଯାଉଯାଉ ।୧।

କେଡ଼େ ଅନୁଭବୀ ଠାକୁର ତୁମେ ଯେ
ଜାଣିପାରି କର ହୃଦୟରେ ବିଜେ
ତୁମେ ଗତି ପୁଣି ପ୍ରଗତିର ପଥେ
ସଦା ଦେଖାଦିଅ ଆପଦେ ବିପଦେ
ତୁମରି ସେବାରେ ବିତାଏ ମୁଁ ଦିନ ଏ ଭବ ସାଗର
ପାରି ହେଉହେଉ ।୨।



ଏ ଜୀବନ ଥିବାଯାଏ ପୂଜୁଥିବି ତୁମକୁ
ପ୍ରାଣଭରି ଝୁରୁଥିବି ବଳିଆର ଭୁଜକୁ ।୦।

ଅନନ୍ତଲୀଳା ତୁମର ଆହେ ଚକାଡୋଳା
ଶାନ୍ତି ଭକ୍ତି ମୁକ୍ତି ଦିଅ ଆଞ୍ଜୁଳା ଆଞ୍ଜୁଳା
ରହସ୍ୟ ଘେରରେ ଅଛି ହଟିଆ ଠାକୁର
କଳବଳ ହୁଏ ଆଜି ପରାଣ ମୋହର
ଦିବ୍ୟ ଭୋଜନ ବି ନରୁଚଇ ମୋତେ
ମନ ଚାହିଁଅଛି ତୁମ ଅବଢ଼ା ଅନ୍ନକୁ ।୧।

ପାପୀ ଡାକୁଛି ତୁମକୁ ତପୀ ବି ଡାକୁଛି
କାହାକୁ ଦିଅ ଅଭୟ କିଏ ବି ମରୁଛି
ତୁମ ଯଶକୀର୍ତ୍ତି ରହିଛି କାଳକାଳକୁ
ଦୟାକର ବାରେ ପ୍ରଭୁ ଏହି ଅଧମକୁ
ଦିନଦିନ ଧରି ଚାହିଁ ବସିଛି ମୁଁ
ତୁମ ସେନେହ ଶରଧା ଟିକେ ପାଇବାକୁ ।୨।



ଦିଅ ପ୍ରଭୁ ଜଗନ୍ନାଥ ତୁମ ଦରଶନ
ହରିନିଅ ସବୁ ଦୁଃଖ ଆରତ ନାଶନ ।୦।

ଆବିଳତା ନାହିଁ କିଛି ଭକ୍ତର ଡାକରେ
କରିଛି ଅପେକ୍ଷା ପ୍ରଭୁ କେଡ଼େ ଭରସାରେ
ଡାକୁଛି ଧୈର୍ଯ୍ୟର ସହ ଅନ୍ତର ଭିତରେ
ଦୟାର ସାଗର ତୁମେ ବଂଧୁ ବିପଦରେ
ତବ ପ୍ରାଣେ ପ୍ରାଣ ମୋର ମିଶିଯାଉ
ଆହେ ପ୍ରଭୁ ପତିତପାବନ ।୧।

ତୁମରି ଆଶିଷ ହେଉ ଜୀବନର ବ୍ରତ
ଦେଖାଅ ତୁମେ ହେ ପ୍ରଭୁ ମୁକତିର ପଥ
ମିଳନ ନ ଦିଅ ପଛେ ବିରହ ନ ଦିଅ
ସୁଖରେ ଅବା ଦୁଃଖରେ ତୁମେ ଦେଖାଦିଅ
ଜୀବ ଯିବାବେଳେ ମରଣ କାଳରେ
ଦେବ ଟିକେ ତୁମ ଦରଶନ ।୨।


୨୫

କି ଲାଭ ମିଳଲା ମୋତେ ତୁମପରି ପ୍ରଭୁ ପାଇ
ଡାକିଡାକି ଥକିଗଲି ଦେଖା ତ ମିଳିଲା ନାହିଁ ।୦।

ଦୟାର ସାଗର ତୁମେ କରୁଣା ଭଣ୍ଡାର
କାହାକୁ କରୁଛ ନିଜ କିଏ ହୁଏ ପର
ମୋ ମନର ଯେତେ ଦୁଃଖ ଯେତେକ ଯାତନା
କେତେ ବା କରିବି ପୂଜା କେତେ ଆରାଧନା
ଶୁଣି କି ନଶୁଣ କାହିଁ ଜାଣିକି ଅଜଣା ଭଳି
ରହିଛ ନିରବ ହୋଇ ।୧।

ପବନରେ ଗଂଧ ତୁମେ ଜଳରେ ଜୀବନ
ଆକାଶର ନୀଳ ତୁମେ ରାତିର ସପନ
ଆଲୋକର ଜ୍ୟୋତି ତୁମେ ସାଗରର ଢେଉ
ଆଖିର ଲୋତକ ତୁମେ ଆହେ ମହାବାହୁ
କେତେ ପାପୀ ତାରିଅଛ କେତେ ଦୁଃଖ ହରିଅଛ
ତାହାର ହିସାବ ନାହିଁ ।୨।




କେମିତି ଜାଣିଲୁ ତୁହି ପୁରୀକୁ ଆସିଛି ବୋଲି
ଦୋଷାଦୋଷ କ୍ଷମା କଲୁ ଯେତେ ଯାହା କରିଥିଲି ।୦।

ଯୁଆଡ଼େ ଚାହୁଁଛି ମୁହିଁ ଦେଖୁଛି କଳା ଶ୍ରୀମୁଖ
ସଭିଙ୍କ ତୁଣ୍ଡରେ ଶୁଭେ ପ୍ରଭୁ ଜଗନ୍ନାଥ ରଖ
ବଡ଼ଦାଣ୍ଡ ତୋର ଉଚ୍ଛୁଳି ପଡୁଛି ଗହଳିରେ
ବାଇଶି ପାହାଚେ ଭିଡ଼ ଲାଗିଅଛି କାଳିଆରେ
ଏତେଦିନ ପରେ ଆସିଛି ଶ୍ରୀକ୍ଷେତ୍ର ଚକାଆଖି ତୋତେ ଦେଖିବି ବୋଲି ।୧।

ଆଖିରେ ଅଛି ମୋ ଅନେକ ସପନ କେଉଁଦିନୁ
ହଜିଲା ଅତୀତ ଲିଭିନି ଏଯାଏଁ ମୋ'ର ମନୁ
ଆସିଛି ଏଠି କହିବାକୁ ମୋର ମନର କଥା
ସହିଯାଇଛି ଯେତେକ ଯାତନା ଯେତେକ ବ୍ୟଥା
ତୋର ଦରଶନ ପାଇ ଆଶା ମୋ ପୂରିଲା, ସତରେ କେତେ ଖୁସି ହେଲି ।୨।



୨୭

କେତେ କେତେ ପାପୀ ଉଦ୍ଧାରିଲ
କେତେ କେତେ ତପୀ ଆଦରିଲ
କେତେ ପୁଣ୍ୟବଳେ ମଣିଷ ଜନମ ଦେଇ
ମୋତେ ପ୍ରଭୁ ତୁମେ ଧନ୍ୟକଲ ।୦।

ଆଖିରୁ ମୋ ଝରେ ଲୋତକର ଧାର
ମନ ମୋର ଥାଉ ତୁମ ଶ୍ରୀପୟର
ଏତିକି ସୁଦୟା କର ପ୍ରଭୁ ମୋତେ
ଏ ଜୀବନ ଯାଉ ଖାଲି ପର ହିତେ
ଯେତେ ଗାଳିମନ୍ଦ ଦେଇଛି ତୁମକୁ
ହସିହସି ସବୁ ସହିଗଲ ।୧।

ବଡ଼ ଅନୁଭବୀ ଠାକୁର ଯେ ତୁମେ
ଭକତେ ବିହ୍ୱଳ ତୁମ ନାମ ପ୍ରେମେ
ସବୁ ଶ୍ରଦ୍ଧା ଆଉ ଭକ୍ତିର ପ୍ରତୀକ
ବିପଦରେ ଶୁଣ ଭକତର ଡାକ
ବିଶ୍ୱମାନସର ଦେବତା ତୁମେ ହେ
ଅପରାଧ ଯେତେ କ୍ଷମାକଲ ।୨।



୨୮

ଚରଣ କମଳେ ଟିକେ ଦିଅ ମୋତେ ସ୍ଥାନ
କେମିତି ପୂଜିବି କୁହ ଆହେ ଭଗବାନ ।୦।

ଭକତର ବଂଧୁ ତୁମେ ଭକତିରେ ବଂଧା
ବିପଦେ ଦିଅ ଅଭୟ ସ୍ନେହ ଆଉ ଶ୍ରଦ୍ଧା
ଅନାଥର ନାଥ ତୁମେ ଅଗତିର ଗତି
ଲୋଡ଼ା ନାହିଁ ସୁନାରୁପା ହୀରା ନୀଳା ମୋତି
ତୁମ ଯଶକୀର୍ତ୍ତି ଗାଇଗାଇ ସରିଯାଉ ପ୍ରଭୁ ଏ ଜୀବନ ।୧।

କୃପାକର ବାରେ ମୋତେ ଆହେ କୃପାସିନ୍ଧୁ
କରୁଣା ସାଗର ତୁମେ ମୁଁ କରୁଣା ବିନ୍ଦୁ
ଶ୍ରୀକ୍ଷେତ୍ରରେ ପାଦ ଦେଇ କୋଟି କୋଟି ପାପୀ
ମୁକତି ଲଭନ୍ତି ତୁମ ନାମ ଜପିଜପି
ତୁମ ପାଦତଳେ ଆଶ୍ରା ଟିକେ ଦେଲେ ମଣିବି ମୁଁ ଭାଗ୍ୟବାନ ।୨।


୨୯

ଆହେ କୃପାନିଧି !
ଅଯାଚିତ କୃପା ତୁମ ଆହେ କରୁଣାବାରିଧି ।୦।

ପୂରିଯାଏ ପେଟ ମୋର
ତୁମ ଓଠେ ହସ ଦେଖି
ବିଶ୍ୱାସ ହରେଇ ଦିଏ
କର ଯେବେ ମୋତେ ଦୁଃଖୀ
ତୁମ ଗୁଣ ଗାନ କରି ପାହିଯାଉ ଜୀବନେ ମୋ ଅନ୍ଧକାର ରାତି ।୧।

ମନ ଆକାଶରେ ମୋର
ତୁମେ ଆସ ଜହ୍ନ ହୋଇ
ଫୁଲର ରେଣୁରେ ଆସ
ମଧୁର ମହକ ନେଇ
ନିରାଶ କରନି ତୁମ କରୁଣାରୁ, ଆନନ୍ଦରେ
ଦିନ ଯାଉ ବିତି ।୨।



ଦେଖି ଆସିଛି ମୋ ଚକାଆଖିଆକୁ
ଚକାଆଖିଆକୁ ମୋ ପ୍ରାଣର ଧନକୁ ।୦।

ତୁହି ମୋର ଗଣ୍ଠିଧନ ଗଳାର ମାଳି
ତୋ ଶ୍ରୀମୁଖୁ ଭକ୍ତି ପ୍ରେମ ପଡ଼େ ଉଚ୍ଛୁଳି
ଅଗୁରୁ ଚନ୍ଦନ ବାସ୍ନା କେଉଁଠୁ ଆସେ
ଚାରିଆଡ଼ ମହମହ କେମିତି ବାସେ
ସତେ କ'ଣ କାଳିଆ ତୁ ଚାହିଁ ବସିଥିଲୁ
ମୋତେ ଦେଖା ଦେବାକୁ ।୧।

ଅନ୍ଧର ଲଉଡ଼ି ମୋର ରଂକରତନ
ତୋ ବିନା ଅଧାଅଧା ଲାଗେ ଜୀବନ
ଦୁଃଖ ପାଶୋରାରେ ମୋର ଜୀବନ ଧନ
ଦୁଃଖରେ ଦୁଃଖରେ ମୋର ବିତୁଛି ଦିନ
ଏତିକି ସୁଦୟା ହେଉ ଶ୍ରୀଚରଣେ ଲୟ
ରହୁ ସବୁଦିନକୁ ।୨।



ତୁମେ କରୁଣାର ସିନ୍ଧୁ ହେଲେ ପ୍ରଭୁ
ମୁଁ ଅଟେ କରୁଣା ବିନ୍ଦୁ
ଦୟାର ସାଗର  ହୋଇ ପ୍ରଭୁ ତୁମେ
ବୋଲାଉଛ ଦୀନବଂଧୁ ।୦।

ଦାରୁବ୍ରହ୍ମ ରୂପ ଦେଖି ଏ ନୟନ
ଯେତେ ପାପ ତା'ର ହୁଏ ଅବସାନ
ଚଉବର୍ଗ ଦାନୀ ବୋଲାଅ ଠାକୁର
ଭାବନାରେ ଦିଶ ତୁମେ ନିରନ୍ତର
ତୁମରି କରୁଣା କରନାହିଁ ଊଣା  ଆହେ ପ୍ରଭୁ ଜଗବଂଧୁ ।୧।

ଭକତେ ଡାକୁଛ ଦର୍ଶନ ଦେବାକୁ
ନବଘନ କାନ୍ତି ରୂପ ଦେଖିବାକୁ
ବଳିଆର ଭୁଜ ଆରତ ନାଶନ
ଅପରୂପ ଠାଣି ହେ ଚକାନୟନ
ଯେତେ ଦେଖୁଥିଲେ ମେଣ୍ଟେ ନାହିଁ ଶୋଷ ଆହେ ପ୍ରଭୁ କୃପାସିନ୍ଧୁ ।୨।


୩୨

ମଥାରେ ତୁଳସୀମାଳ
କଣ୍ଠରେ ଦୟଣା ହାର
ମହମହ ବାସ ତୁମେ ଆହେ ବଳିଆର ।୦।

ଶ୍ରୀକ୍ଷେତ୍ର ଭୂଇଁ ସେ ମାଟି ବୈକୁଣ୍ଠ
ଭକ୍ତ ପାନ କରେ ଭକ୍ତି ଆକଣ୍ଠ
ସମର୍ପଣ ଭାବ ଉଦୟ ହୋଇ
ନୀଳଚକ୍ରେ ନୀଳ ନେତ ଉଡ଼ଇ
ଅପରୂପ ଶୋଭା ବଡ଼ ମନଲୋଭା ଚକା ଆଖିର ।୧।

ସବୁଠାରୁ ଶ୍ରେଷ୍ଠ ଅଟେ ଏ ଧାମ
ତେଣୁ ତୁମ ନାମ ପୁରୁଷୋତ୍ତମ
ନୀଳକନ୍ଦରର ମୋ ନୀଳମଣି
ଦେଇଥାଅ ସ୍ନେହ ଶ୍ରଦ୍ଧାର ବାଣୀ
ମନ ମୋହୁଥାଅ ପାଖେପାଖେ ଥାଅ ହୋଇ ନିଜର ।୨।



ଚକାଚକା ଦୁଇ ଆଖି ଦିଶଇ ତୋରା
ସତେ ଅବା ଦୁଇଗୋଟି ଲୋଟଣୀ ପାରା ।୦।

ସେ ଆଖି ଜ୍ୟୋତିରେ ମୋହେ ଜଗତଯାକ
ମୋ ପରାଣ ଝୁରିହୁଏ କଳା ଶ୍ରୀମୁଖ
ସେ ଆଖି ଠାଣିରେ ବଂଧା ସାରା ଦୁନିଆ
ଦେଖୁଥାଏ ଚତୁର୍ଦ୍ଦିଗ ଚକାଡୋଳିଆ
ଯେତେ ଯାହା ପ୍ରଶ୍ନ ମୋର ସେ ଆଖି ଦିଏ ଉତ୍ତର
ତା' ପ୍ରେମରେ ହୁଏ ମୁଁ ଯେ ଆତ୍ମହରା ।୧।

ସେ ଆଖିରେ ପଲକ ପଡ଼େନାହିଁ କେବେ
ବିପଦେ ଯିଏ ଡାକେ ସେ ଆଖିକୁ ଶୁଭେ
ନିରବତା ସେ ଆଖିର କଳଇ ମନ
ସେ ଆଖିକୁ ଭାଳିଭାଳି ବିତଇ ଦିନ
ସେ ଆଖିକୁ ଦେଖିଦେଖି ମନ ମୋର ଯାଏ ଲାଖି
ପାଗଳ ତା' ପାଇଁ ମୁଁ ଜୀବନସାରା ।୨।



ଅନନ୍ତ ଅସୀମ ତୁମେ ଅଗତର ଗତି
ଅନାଥର ନାଥ ତୁମେ ହେ ଜଗତପତି ।୦।

ତୁମ ନାମଧରି କେତେକେତେ ପାପୀ
ତରିଗଲେ ଏଠୁ ତୁମ ନାମ ଜପି
ବିପଦରେ ପ୍ରଭୁ ତୁମେ ଏକା ସାହା
ଭରସାରେ ଡାକେ ଆହେ ଚଉବାହା
ଚିତ୍ତ ରହୁ ମୋର ଶ୍ରୀଚରଣେ ତବ ହେ କୃପାନିଧି ।୧।

ତୁମେ ତ ଦେଖୁଛ କେତେ ମୁହିଁ ଦୁଃଖୀ
ଜଣାଏ ଦୁଃଖ ମୋ ତୁମକୁ ଯେ ଡାକି
ସୁଖ କି ପ୍ରଭୁ ମୋ କପାଳରେ ନାହିଁ
କେମିତି ଡାକିବି ହେ ଜଗତସାଇଁ
ଶୁଣ କି ନଶୁଣ, ଗୁହାରି କରିବି ମୁଁ ଦିନରାତି ।୨।



୩୫

ମନର ସରାଗ ସବ୍ ଢାଳି ଦେଲି ଶ୍ରୀପୟରେ
ମୋ ସ୍ୱପ୍ନର ନୀଳକଇଁ ସତେ ଫୁଟେ ମୋ ଅନ୍ତରେ ।୦।

ମନରେ ଭାବନା ତବ
ଜୀବନକୁ କମନୀୟ କରେ
ସ୍ୱର ଯେସନେ ଗୀତରେ
ଆନନ୍ଦର ଅଭିସାର ତୋଳେ
ଯାତ୍ରାର ଅନନ୍ତ ପଥେ କିଏ ଛୁଇଁ ଦିଏ ମୋତେ
ତା'ର ଅଦୃଶ୍ୟ ହାତରେ ।୧।

ଚପଳ ଦୃଷ୍ଟିରେ ତବ
ସାରା ସୃଷ୍ଟି ଦୃଶ୍ୟମାନ ହୁଏ
ସଜଳ ଚାହାଣି ତୁମ
ସମୟକୁ କୋଳ କରିନିଏ
ଆକୁଳ ଶ୍ରଦ୍ଧାରେ ମୋତେ କିଏ ଡାକିଦିଏ ସତେ
ତା'ର ଅବ୍ୟକ୍ତ ଭାଷାରେ ।୨।



ପ୍ରାଣଭରା ଅନୁଭବ ଯେବେ ମୋର ପରିପୂର୍ଣ୍ଣ ହୁଏ
ହୃଦୟର ଆକୁଳତା ବାରମ୍ବାର ବଢ଼ିବଢ଼ି ଯାଏ ।୦।

ସତି ଉପବନେ ମୋର
ତୁମେ ତ ଗୋଲାପ ଏକ
ସୁରଭିତ ବାସ୍ନା ନେଇ
ଫୁଟୁଛ ଜୀବନ ଯାକ
ସେ ବାସ୍ନାରେ ବିମୋହିତ ମନ ମୋର
ସ୍ନେହସୁଧା ପିଏ ।୧।

ଏ ମାଟିରେ ଚକାଡୋଳା
ଦେଲ ମୋତେ ପରିଚୟ
ପ୍ରାପ୍ତିର ପୁଲକ ଯେତେ
ହୃଦୟେ ଝରାଇ ଦିଅ
ଦିଗନ୍ତରେ ଦିଶେ ମୋତେ ଆଲୋକର
କ୍ଷୀଣ ରେଖାଟିଏ ।୨।



ଚାଲ ଯିବା ଶ୍ରୀକ୍ଷେତ୍ରରେ ଗଢ଼ିବାକୁ ଘର
ଯେଉଁଠି ରହନ୍ତି ସେହି କାଳିଆ ଠାକୁର ।୦।

ନିରବ ନିଶ୍ଚଳ ତାଙ୍କ ଦେହ
ଅନାଦି ଅନନ୍ତ ଅପ୍ରମେୟ
ଚେତନାର ଘଟଇ ଉଦୟ
ଚାରିଆଡ଼ ଜଗନ୍ନାଥମୟ
ଏମିତି ଘର କରିବି ତାଙ୍କୁ ନିତି ଦେଖୁଥିବି
ନୀଳଚକ୍ର ଦିଶୁଥିବ ଘରକୁ ମୋର ।୧।

ଅଥୟ ଉଚ୍ଚାଟ ମୋର ମନ
କେବେ ବା ଆସିବ ସେହି ଦିନ
ତ୍ରିଭଙ୍ଗୀ ଠାଣିରେ ଠିଆ ହୋଇ
ମୋତେ ସିଏ କରିବେ ଉଚ୍ଛନ୍ନ
କେବେବି ମୁଁ ଶୁଣିବିନି ମୋହନ ବଂଶୀ ଭିତରେ
ଛଟପଟ ଆତ୍ମାର କାନ୍ଦକାନ୍ଦ ସ୍ୱର ।୨।



କୁହ ଜଗନ୍ନାଥ କାଳିଆ ସାଆନ୍ତ
କେମିତି ଡାକିବି ମୁହିଁ
ସକାଳର ମୋର ପ୍ରଥମ ପ୍ରଣାମ
କେବଳ ତୁମରି ପାଇଁ ।୦।

କେତେ ଶ୍ରଦ୍ଧା ପ୍ରେମ ଭକତିରେ ବଂଧା
ତୁମେ ପ୍ରଭୁ ଭଗବାନ
ମୋ ବେଳକୁ କାହିଁ ବଧିର ହେଉଛ
ଦେଉନାହଁ ଜମା ଧ୍ୟାନ
ଝୁରିଝୁରି ଯିବି କେଉଁଦିନ ମରି
ତୁମ ନାମ ଗାଇଗାଇ ।୧।

ଯେତେ ଜଣାଇଲି ମୋ ଦୁଃଖ ଗୁହାରି
ତୁମେ ଦେଲ ଆଖିବୁଜି
ସତରେ କରୁଛ ପରୀକ୍ଷା କି ପ୍ରଭୁ
ମନେମନେ ହୁଏ ହେଜି
ଲିଭିଲିଭି ଆସେ ଜୀବନ ଦୀପ ମୋ
ଦେଖା ଦେଉନାହଁ କାହିଁ ।୨।



ପାଦ ନଥାଇ ତୁମେ ଦୁନିଆ ବୁଲୁଛ
ହାତ ନଥାଇ ତୁମେ ମୁଲକ ଧରିଛ ।୦।

କୋଟି ହୃଦୟର ଦେବତା ତୁମେ ହେ
ପରଖୁଛ ଭକତକୁ
କେତେକେତେ ଭକ୍ତ ଝୁରି ମରୁଛନ୍ତି
ଦରଶନ ପାଇବାକୁ
ତୁମରି ଦୟାରେ ତୁମରି ମାୟାରେ କଳବଳ କରାଉଛ ।୧।

ସାରା ସଂସାରରେ ଗୋଟିଏ ଦିଅଁ ହେ
ଭକତ ଯେ ଅଗଣିତ
ଜଗନ୍ନାଥ ରଖ ଟେକିଦେଲେ ହାତ
ଭକ୍ତ ହୁଏ ସମର୍ପିତ
ପାଖେଯାଇ ତା'ର ବିପଦୁ ଉଦ୍ଧାରି ଭଗବାନ ବୋଲାଉଛ ।୨।



ହୃଦୟରେ ଯେବେ ତୁମ ଛବି ଦେଖେ
ଅସରାଏ ଲୁହ ଯାଏ ବହି
ଭକ୍ତିର ପସରା ଖୋଲିଦେଲି ସିନା
କିଛିତ ସେଥିରୁ ନେଲ ନାହିଁ ।୦।

ଆକୁଳ ଚାହାଣି ମୋର
କୋହ ଭରପୂର
ହୃଦୟେ କ୍ଷତର ଜ୍ୱାଳା
ଦହେ ନିରନ୍ତର
ଉଦାସ ମନର ଫାଙ୍କେ ଡାକିଡାକି
ଥକିଗଲି, ଦେଖା ଦେଲ ନାହିଁ ।୧।

ଜୀବନର ଶେଷ ଇଛା
ତୁମଠି ଆଶ୍ରୟ
ଅଦୃଶ୍ୟ ଇଙ୍ଗିତେ ତୁମେ
ଟିକେ ଛୁଇଁଦିଅ
ନୀଳଚକ୍ରେ ଉଡୁଥାଉ ପତିତପାବନ ବାନା ସବୁଦିନ ପାଇଁ ।୨।



ଯେତେ ଅନୁଭବ ଯେତେ ଅଭିମାନ
ସବୁର ତୁମେ ଈଶ୍ୱର
ଯେତେ ଯେତେ କଥା ହୃଦୟର ବ୍ୟଥା
ଶୁଣି ବାରେ ଦୂର କର ।୦।

କାମନାର ସମୁଦ୍ରରେ
ଦେଖାଦିଅ ଝଡ଼ ହୋଇ
ଯାହା ଯିଏ ମାଗିବସେ
ସହଜରେ ଦିଅ ନାହିଁ
ଭାବନାର ଭବଜଳେ ଭାବୁଛି ମୁଁ ସବୁବେଳେ
ଚାରିଆଡ଼ ଦିଶେ ଅନ୍ଧକାର ।୧।

ତୁମର କୁହୁକ ଖେଳ
ଖାଲି ଛାଇ ଆଲୁଅର
ମାୟାର ପଟଳ ଖୋଲି
ଦିଅ ଜଗତ ଈଶ୍ୱର
ଅନିଶ୍ଚିତ ଅପେକ୍ଷାରେ କଟିଯିବ ଚିରକାଳ
ଝୁରିଝୁର ପରାଣ ମୋହର ।୨।



ରତ୍ନ ସିଂହାସନୁ ଓହ୍ଲାଇ ଆସ
ବଡ଼ଦାଣ୍ଡକୁ
ଭକତେ ଅଛନ୍ତି ଦେଖିବାକୁ ତୁମ
ଲୀଳାଖେଳାକୁ ।୦।

ଟାହିଆ ହଲାଇ ଗୋଟି ପହଣ୍ଡିରେ
ଝୁଲିଝୁଲି ତୁମେ ଆସ
ନନ୍ଦିଘୋଷ ରଥ ଥୁଆ ହୋଇଅଛି
ପାଇବା ପାଇଁ ପରଶ
ସେ ରଥରେ ବସି ତୁମେ ହସି ହସି
ଦରଶନ ଦିଅ ଭକ୍ତଗଣଙ୍କୁ ।୧।

ଆଖିରୁ ଗଡ଼ଇ ଧାରଧାର ଲୁହ
ଅନ୍ତରରେ କୋହ ଭର୍ତ୍ତି
କେତେ ବଡ଼ ଆଶା ତୁଣ୍ଡେ ନାହିଁ ଭାଷା
ଧନ୍ୟସେ କାଠ ମୂରତି
କେଡ଼େ ସରାଗରେ ଅପେକ୍ଷାରେ ଭକ୍ତେ
ରଥ ଦଉଡ଼ିକୁ ଛୁଇଁ ଦେବାକୁ ।୨।



ଏତେ ଦିନକେ ଆସିଛି ରଥଯାତରା
ଦେଖିବା ଜଗାକୁ ମନପୂରାଇ
ବଡ଼ଦାଣ୍ଡରେ ଗଡ଼ିବ ରଥ ତାଙ୍କର
କେତେ ବାଟୁ ଭକ୍ତ ଆସନ୍ତି ଧାଇଁ ।୦।

ବରଷକେ ଥରେ ଅଳି କରେ ସିଏ
ଭକତଙ୍କ ସାଂଗେ ଖେଳିବା ପାଇଁ
ଭକତଙ୍କ ଡାକ ପାରେନି ଏଡ଼ାଇ
ରତ୍ନ ସିଂହାସନୁ ଆସେ ଓହ୍ଲାଇ
କୋଟିକରେ ସିଏ ଗୋଟିଏ ମାତର
ଏମିତି ଦିଅଁ ଯେ ଜଗତେ ନାହିଁ ।୧।

ବଡ଼ ଅଝଟିଆ ଠାକୁର ସିଏ ଲୋ
ଯାହାକୁ ଦେଖେ ସେ ଭାବେ ନିଜର
ଜାତି ଧର୍ମ ବର୍ଣ୍ଣ ମାନେନି ଜମାସେ
ସମସ୍ତଙ୍କୁ ଦିଏ ଅଭୟ ବର
କେଡ଼େ ଭାଗ୍ୟବାନ ମଣନ୍ତି ଭକତେ
ଏତେଦିନେ ତା'ର ଦର୍ଶନ ପାଇ ।୨।



ରତ୍ନ ସିଂହାସନ ଖାଲି ଆଜି ଦିଶେ
କାଳିଆ ଯାଇଛି ବୁଲିବା ପାଇଁ
ଭକତେ କରନ୍ତି ବଡ଼ ଦାଣ୍ଡେ ମେଳି
କାଳିଆ ଆସିବା ଅଛନ୍ତି ଚାହିଁ ।୦।

ଦଇତାପତିଏ ଘେରି ରହିଛନ୍ତି
କୋଳ କରିନେବେ କାଳିଆକୁ
ପହଣ୍ଡିରେ ବିଜେ କରିବ କାଳିଆ
ଦେଖି ହସୁଥିବ ଭକତଙ୍କୁ
ନନ୍ଦିଘୋଷ ରଥ ସଜା ହୋଇଅଛି ଭକତେ ଅଛନ୍ତି ଟାଣିବା ପାଇଁ ।୧।

କିଏ ସେ ନାଚୁଛି କିଏ ସେ ଗାଉଛି
କିଏ ବା ହେଉଛି ଆତ୍ମହରା
ବୋଲି ଦେଉଛି କେ ବଡ଼ଦାଣ୍ଡ ଧୂଳି
ଆନନ୍ଦେ ତାହାର ଦେହସାରା
ଡାହୁକ ଡାକୁଛି ରଥ ଗଡୁଅଛି ଭିତରେ ଅଛନ୍ତି ଜଗତ ସାଇଁ ।୨।



ଦ୍ୱାପରର କୃଷ୍ଣ ତୁମେ
କଳିଯୁଗେ ଜଗନ୍ନାଥ ହେଲ
ବଂଦୀଘରେ ଜନ୍ମନେଇ
ଏଠାକୁ ଜଳେ ଭାସି ଆସିଲ ।୦।

ନୀଳାଚଳେ ବିଜେକରି
ଭାବୁଅଛ ସତେ ଗୋପପୁର
ଗଉଡ଼ ବାଳକେ ସବୁ
ଦିଶୁଛନ୍ତି ଭକତ ତୁମ୍ଭର
ବଡ଼ଦାଣ୍ଡ ଲାଗେ ଗୋପଦାଣ୍ଡ ପରି
ନରେନ୍ଦ୍ର ପୋଖରୀ ଲାଗେ ଯମୁନାର ଜଳ ।୧।

ରତ୍ନ ସିଂହାସନ ଲାଗେ
ସୁନ୍ଦର ସେ କଦଂବର ମୂଳ
ମଥାରେ ତୁଳସୀ ଦିଶେ
ସତେ ଅବା ମୟୂରର ଚୂଳ
ମାଉସୀମା' କ'ଣ ଯଶୋଦା ମା' ସତେ
ଯାହାପାଇଁ ତୁମେ ସଦା ହେଉଛ ପାଗଳ ।୨।



ତୁମେ ବଂଧୁ ତୁମେ ସଖା ତୁମେ ତ ଈଶ୍ୱର
ତୁମେ ଶ୍ରଦ୍ଧା ତୁମେ ଭକ୍ତି ବିଶ୍ୱାସ ମୋହର ।୦।

ତୁମ ନାମରସୁ ସଦା ଝରଇ ଅମୃତ
ତୁମ ଶ୍ରୀଚରଣେ ସଦା ରହିଥାଉ ଚିତ୍ତ
ବିଷମ ଜଞ୍ଜାଳ ମୋତେ ଚାରିକଡ଼େ ଘେରି
ଅସ୍ତବ୍ୟସ୍ତ ହୃଦୟକୁ ଦେଉଛି ବିଦାରି
କାହିଁ ଲଗାଅନି ଡୋରି ହେଲିଣି ମୁଁ ଏତେ ସରି
ତୁମ ବିନା ଚାରିଆଡ଼ ଦିଶେ ଅଂଧକାର ।୧।

ସବୁଥିରେ ଅଛ ପୁଣି କେଉଁଥିରେ ନାହିଁ
କାହାକୁ ଦେଉଛ ଚିନ୍ତା କାହାକୁ ଅଭୟ
କେତେ ଅଭିଯୋଗ କରିଛି ତୁମଠି ମୁହିଁ
ସବୁ ସହିଯାଅ କେବଳ ମୋ ମୁହଁ ଚାହିଁ
ଭାବବିନୋଦିଆ ତୁମେ ଦୟାକର ଏ ଅଧମେ
ଭାବ ଡୋରେ ବାଂଧିଦିଅ ଭାବର ଠାକୁର ।୨।



ପ୍ରଭୁ ନିଳାଦ୍ରି ବିହାରୀ...
ଜାଣେନି ମୁଁ ଅପରାଧ ମୋର
କାହିଁକି ହେଲି ମୁହିଁ ଦାଣ୍ଡର ଭିକାରୀ ।୦।

ମୁଁ ଜାଣେନି ମୋର କପାଳରେ କ'ଣ
ଜନମରୁ ଲେଖାଅଛି
ତୁମ ପାଦତଳେ ଆଶ୍ରା ଟିକେ ଦିଅ
ଏତିକି ମୁଁ ମାଗୁଅଛି
ସବୁ ଜାଣିଶୁଣି କାହିଁକି କେଜାଣି କରୁଅଛ ଏତେ ସରି ।୧।

ତୁମେ ଶୂନ୍ୟବ୍ରହ୍ମ ତୁମେ ପୂର୍ଣ୍ଣବ୍ରହ୍ମ
ତୁମେ ତ ପୁରୁଷୋତ୍ତମ
ତୁମେ ଆଦିଅନ୍ତ ଅନାଦି ଅନନ୍ତ
ତୁମେ ତ ହିଁ ବିଶ୍ୱପ୍ରେମ
ତୁମ ପାଦତଳେ ଜୀବ ଚାଲିଯାଉ ତୁମ ନାମ ତୁଣ୍ଡେ ଧରି ।୨।



ତୁମେ ବୋଲାଉଛ ଅନ୍ତରଯାମୀ ହେ
ଅନ୍ତର ତ ବୁଝିପାର
କହିକି ପାରିବ ଅପରାଧ ମୋର
କାହିଁ କର ହତାଦର ।୦।

ଶରଧାବାଲିରୁ ମୁଠାଏ ଧରିଲେ
ଦେହେ ଆସେ ଶିହରଣ
ବଡ଼ଦାଣ୍ଡ ଧୂଳି ଦେହେ ହେଲେ ବୋଲି
ଦିଶେ ଚଉଦ ଭୁବନ
ଇଚ୍ଛାମୟ ପ୍ରଭୁ ତୁମେ ମୋର ସବୁ ଦୋଷାଦୋଷ କ୍ଷମାକର ।୧।

ଅନ୍ତରେ ମୋହର ପରମ ଆନନ୍ଦ
ନୟନରେ ନାଚ ତୁମେ
ମନରେ ମୋହର ଅସୀମ ଭକତି
ଭରିଦିଅ ଶ୍ରଦ୍ଧା ପ୍ରେମେ
କାହାକୁ କହିବି କିଏବା ଶୁଣିବ ତୁମ ଛଡ଼ା ପ୍ରଭୁ ମୋର ।୨।



କି ସୁନ୍ଦର ରୂପ ତୁମ କି ସୁନ୍ଦର ଠାଣି
ଅନ୍ତର ବେଦନା ମୋର ବୁଝିକି
ନ ବୁଝ ତୁମେ କାହିଁକି କେଜାଣି ।୦।

ମୋ ଆରତ ଫେଡ଼ ପ୍ରଭୁ
ଆହେ ମହାବାହୁ
ତୁମ ନାମ ଧରି ଧରି
ଜୀବ ମୋର ଯାଉ
ଏ ଭବସାଗରେ ଭାସୁଥିବା ନାବ
ତୁମର କି ନୁହେଁ ପାରେନି ଜାଣି ।୧।

ଚରଣ କମଳେ ତୁମ
ଖୋଜୁଅଛି ରାହା
ଦେବ ମୋତେ ମନଜାଣି
ଆହେ ଚଉବାହା
ଦିନଦିନ ଧରି କରୁଛି ଗୁହାରି
କେବେ ମୁକ୍ତିଦେବ ହେ ଚିନ୍ତାମଣି ।୨।



ଦାସିଆ ଭକତ ପରି
ପ୍ରଭୁ ମୁହିଁ ହୁଏ
ଆଖିରେ ନ ଦେଖେ ପଛେ
ଅନ୍ତରରେ ଥାଏ ।୦।

ଷାଠିଏ ପଉଟି ଅନ୍ନ
ନିତି ତୁମେ ଖାଅ
ମୋ ପାଇଁ ଅବଢ଼ା ଅନ୍ନ
ଟିକେ ରଖିଥାଅ
ସେଥିରେ ମୋହର ଅମାପ ଶରଧା ପାଇବାକୁ ଚାହିଁ ରହେ ।୧।

ନଡ଼ିଆଟି ଦେଲା ସିଏ
ତୁମକୁ ମିଳିଲା
ଅସୀମ ଭକ୍ତିରେ ସିଏ
ସମର୍ପିତ ହେଲା
ଏମିତି ଠାକୁର ବୁଝିଲ ଅନ୍ତର ଭାଳି ଭାଳି ଦିନ ଯାଏ ।୨।



ଦାରୁବ୍ରହ୍ମ ଜଗନ୍ନାଥ କାଳିଆ ରତନ
ଦିନରାତି କରୁଛି ମୁଁ ତୁମ ଜୟଗାନ ।୦।

ତୁମେ ଇଚ୍ଛାମୟ ଇଚ୍ଛାରେ ତୁମର
ବାଂଧିଅଛ ଏ ଜଗତ
ଅଗତିର ଗତି ହେ ଜଗତପତି
ସବୁ ମିଛ ତୁମେ ସତ
ଏ ଜୀବନ ଯାଉ ତୁମରି ସେବାରେ
ଝୁରିଝୁରି ନିଶିଦିନ ।୧।

ଯେତେବେଳେ ଯାହା ଘଟୁଛି ଏଠାରେ
ସବୁ ତ ତୁମରି ଇଚ୍ଛା
କେତେକେତେ ଭକ୍ତ ଡାକନ୍ତି ବିକଳେ
ପୂର୍ଣ୍ଣ କର ମନବାଞ୍ଛା
ଏତିକି ଗୁହାରି ଶୁଣିବ ମୋହରି
ଡାକୁଛି ମୋ ଜୀବଧନ ।୨।







ଜାଣେନି ପ୍ରଭୁ ମୁଁ କି ପାପ କରିଛି
ତୁମ ଦେଖା ପାଏ ନାହିଁ
ଯାହା ମୁଁ ଦେଉଛି ଯାହା ମୁଁ ମାଗୁଛି
ସବୁ କର ନାହିଁ ନାହିଁ ।୦।

ତୁମେ ତ ଜାଣିଛ ଅନ୍ତର ବେଦନା
ତେଣୁ ତ ଅନ୍ତରଯାମୀ
ତୁମେ ତ ବୁଝିଛ ଭକତର ବ୍ୟଥା
ତେଣୁ ତ ଭକତପ୍ରେମୀ
ପାତର ଅନ୍ତର କରନାହିଁ ପ୍ରଭୁ
ସବୁ ଶୁଣ ମନଦେଇ ।୧।

ଅଯଥାରେ କେତେ ଗାଳି ମୁଁ ଦେଇଛି
କେବେ ତ କରିନ ମାନ
ସବୁ ଗାଳି ମୋର ସହି ନେଇଅଛ
ଆହେ ପତିତପାବନ
ଏ ଜୀବନ ଯାଉ ତୁମରି ଚରଣେ
ଆଉ କିଛି ଲୋଡ଼ା ନାହିଁ ।୨।



୫୩

ଅନାଥ କଲ କାହିଁକି ଆହେ ଜଗନ୍ନାଥ
ମାଗିଯାଚି ଚଳୁଥିବି କେତେଦିନ ମୁହିଁ
ଦିଶେ ଅନ୍ଧକାର ମୋର ଚାଲିବାର ପଥ ।୦।

ତୁମେ ମୁକ୍ତି ପ୍ରଦାୟକ
ପୁଣି ଶକ୍ତିଦାତା
ନୟନେ ଆଲୋକ ରେଖା
ଅନ୍ତରେ ଶରଧା
ଏମିତି ଠାକୁର ତୁମେ ଚଳାଉଛ ଏ ସାରା ଜଗତ ।୧।

ମନ ମୋର ଚାହେଁ ଯାହା
ପାଏ ନାହିଁ କେବେ
ତୁମ ଛଡ଼ା ମୋର ଆଉ
କିଏ ଅଛି ଭବେ
ଭରସା କରିଛି ମୁଁ ତୁମକୁ ପ୍ରଭୁ ହେ ଦିଅ ସାକ୍ଷାତ ।୨।





ଭରସି ପାରୁନି ତୁମକୁ ଆହେ ନିରାକାର
ଡାକି ଡାକି ଥକିଲିଣି ପ୍ରଭୁ ଗିରିଧର ।୦।

ଚାରିଆଡ଼େ ତୁମ ବାଜୁଛି ନାଗରା
ତୁମେ ଯେ ଦୁଃଖନାଶନ
ମୋ ଦୁଃଖକୁ କିଆଁ ଆଖି ବୁଜିଦିଅ
ଆହେ ପତିତପାବନ
ଅଜାଣତେ ଯେବେ ଗାଳି ଦେଇଥାଏ
ମୋ ଦୋଷକୁ କ୍ଷମା କର ।୧।

ନୀଳଚକ୍ର ବାନା ଉଡ଼େ ଫରଫର
ତାକୁ ଯେବେ ଦିଏ ଚାହିଁ
ସବୁତକ ଦୁଃଖ ଆହେ ପଦ୍ମମୁଖ
ଯାଏ ଅଚିରେ ଉଭାଇ
ଦୀନଜନବଂଧୁ ହେ କରୁଣା ସିନ୍ଧୁ
ସଂସାରୁ ମୋତେ ଉଦ୍ଧର ।୨।



ଷୋଳକଳା ଚକାଡୋଳା ଏଡ଼େ ଛଳିଆ
ଦୀନବାନ୍ଧବ ହରି ତୁ ନୀଳାଚଳିଆ ।୦।

ତୋ ନାମ ଜପିଲେ ମିଳେ
ସରଗ ସୁଖ
ତୋ ଗୁଣ ଗାଇଲେ ମନେ
ଭରେ ସରାଗ
ଜପି ଜପି ତୋର ନାମ ଚାଲିଯାଉ ଏ ଜୀବନ ଚକାଆଖିଆ ।୧।

ଆକାଶରେ ନୀଳ ମେଘ
ହେ ନୀଳବ୍ରହ୍ମ
ସାଗରର ନୀଳ ଜଳ
ଗାଏ ତୋ ନାମ
ନୀଳାଚଳବାସୀ ତୁହି ନେଉ ମୋର ମନ ମୋହି ସବୁ ତୋ'ରି ମାୟା ।୨।



ଶ୍ରୀମୁଖ ସୁନ୍ଦର ପ୍ରଭୁ ଗୋଲୋକବିହାରୀ
କେଡ଼େ ଶରଧାରେ ନିଅ ଆପଣାର କରି ।୦।

ରଖିଥାଏ ମନ ମୋର
ସଦା ଶ୍ରୀପୟରେ
କଟୁଥାଉ ଦିନ ମୋର
ସିଂହ ଦୁଆରରେ
ଗରୁଡ଼ ସ୍ତମ୍ଭ ପଛରେ ଦିଅ ହେଲେ ଦେଖାଥରେ ହେ ବିଶ୍ୱବିହାରୀ ।୧।

କେତେ କେତେ ପୂଜା ପୁଣି
କେତେ ଆରାଧନା
କରି ଉଡ଼ାଇବି ନିତି
ତୁମ ଯଶବାନା
ସତ କୁହ ପ୍ରଭୁ ମୋର କି ଦୋଷ କରିଛି ମୁହିଁ କପଟ ନ କରି ।୨।



ଅଧରୁ ତୁମର ଅମୃତ ଝରଇ ଆଖିରୁ କରୁଣା ବାରି
ହୃଦୟୁ ଝରଇ ଆନନ୍ଦଉଲ୍ଲାସ ହସେ ଦିଅ ପ୍ରାଣ ଭରି ।୦।

ବୁଲି ଆସିଲେ ତୁମ
ମନ୍ଦିରର ବେଢ଼ା
ଚାଖିଦେଲେ ତୁମର ସେ
ଅମୂଲ୍ୟ ଅବଢ଼ା
ପୂରିଯାଏ ପେଟ ଟଳଇ ଶଙ୍କଟ ଆହେ ଗୋଲୋକବିହାରୀ ।୧।

ଭାବର ଠାକୁର ତୁମେ
ଲଗାଇଛ ଡୋରି
ଯେଉଁଠି ଥାଅ ବି ମୋତେ
ପାଶେ ନିଅ ଧରି
ଆଶାର ଆଲୋକ ଦେଖାଇ କି ତୁମେ ନିଅ ଆପଣାର କରି ।୨।



କାଳିଆ ରତନ ମୋର କାଳିଆଧନ
ପୂଜି ପାରିଲିନି ବୋଲି ଭକ୍ତି ନୈବେଦ୍ୟରେ
କରିଛୁ ତୁ ଅଭିମାନ ।୦।

ଯେତେ ଦୁଃଖ ଅଛି ଏହି ସଂସାରରେ
ସବୁତକ ମୋତେ ଦେଇଦେ
ଯେତେ କଷ୍ଟ ଅଛି ଭୋଗିବାକୁ ମୋର
ସବୁ ଏକାଥରେ କହିଦେ
କାହିଁ ଏ ଜୀବନ ହୁଏ ହୀନିମାନ କରିଦେଇ ମୋତେ ଭାଗ୍ୟହୀନ ।୧।

ଯାହା ଯାହା ମୋର ଲେଖିଛୁ କପାଳେ
ସେ ସବୁ ତ ମୁଁ ଭୋଗୁଥିବି
ଯାହା ଅଘଟଣ ଘଟିବ ଜୀବନେ
ସେ ସବୁ ତ ମୁଁ ସହିଯିବି
ଭକତିରେ ଊଣା କାହିଁକି କରିଲୁ କେମିତି କରବି ସମର୍ପଣ ।୨।



ମନରେ ଆସୁଛି ସମର୍ପଣ ଭାବ
ହୃଦୟେ ଆସୁଛି କୋହ
ଜାଣନା କି ପ୍ରଭୁ ଅନ୍ତର ବେଦନା
କୃପାଟିକେ କରିଦିଅ ।୦।

ସୁର ଦେଇଅଛ କୋଇଲିର କଣ୍ଠେ
ଫୁଲରେ ଭରିଛ ବାସ
ପବନେ ଆଣିଛ ମଧୁର ମହକ
ଚହଟଇ ଚଉପାଶ
ସାଗରେ ଭସାଇ ଆଶ୍ରୟର ତରୀ ଭକତେ ଦିଅ ଅଭୟ ।୧।

ମେଘକୁ ଦେଇଛ ବଜ୍ର ବିଜୁଳି
ଝଡ଼େ ଭୟାନକ ରୂପ
ଧ୍ୱଂସକୁ କହିଛ ରଚିବ ତାଣ୍ଡବ
କ୍ଷୟ ହେବ ସବୁ ପାପ
ଚାରିଆଡ଼ ଦିଶେ ଖାଲି ମୋତେ ପ୍ରଭୁ ସତେ ଜଗନ୍ନାଥମୟ ।୨।



୬୦

ସାରା ମୁଲକର ମାଲିକ ତୁମେ ଯେ ଅଭୟ ଆଶ୍ରୟ ଦିଅ
ଅନାଥର ନାଥ ପ୍ରଭୁ ଜଗନ୍ନାଥ ସବୁ ଦୁଃଖ ହରିନିଅ ।୦।

ନେତ୍ର ମୋ ପବିତ୍ର ହୁଏ
ତୁମ ରୂପ ଦେଖ୍
ବାରେ ଫେଡ଼ ମୋ ଆରତ
ଆହେ ଚକାଆଖ୍
ଜପି ଜପି ଦିବାନିଶି ଭବଜଳେ ଯାଏ ଭାସି କୂଳରେ ଲଗାଇ ଦିଅ ।୧।

ଭରସା କରିଛି ତୁମ
ଭଲ ପାଇବାକୁ
ତୁମେ ଯଦି ନ ଶୁଣିବ
ଡାକିବି କାହାକୁ
ତୁମେ ମୋ ଆଶା ଭରସା ତୁମ୍ ବିନା ପ୍ରଭୁ ଚାରିଆଡ଼ ଅନ୍ଧକାରମୟ ।୨।



ମୁଠାଏ  ଶରଧା ବାଲିରେ ମୁଁ
ଭୁଲିଯାଏ ସବୁ ଦୁଃଖ
ମୁନ୍ଦାଏ ନରେନ୍ଦ୍ର ଜଳରେ ମୁଁ
ଦେଖେ ତୋ କଳା ଶ୍ରୀମୁଖ ।୦।

ନନ୍ଦିଘୋଷ ରଥ ଗଡୁଛି ତୋହର
ବଡ଼ଦାଣ୍ଡେ ରହି ରହି
ନାଲି ଅଧରରେ ହସୁଛୁ କାଳିଆ
ଜଗତ ଦେଉଛୁ ମୋହି
ଧନ୍ୟ ହେବ ଏ ଜୀବନ ଏତିକି ମୋ ନିବେଦନ
ଦେବୁ ମୋତେ ବଇକୁଣ୍ଠ ସୁଖ ।୧।

କେତେ ଜଂଜାଳରେ ବାନ୍ଧିକି ରଖୁଛୁ
କଳବଲ ହୁଏ ମୁହିଁ
କେତେ କେତେ ପାପୀ ତାରିଛୁ ସଂସାରୁ
ମୋ ବେଳକୁ କରୁ ନାହିଁ
ଶୁଣିବୁନି ମୋ ଗୁହାରି ଦେବି ଏ ଜୀବନ ହାରି
ତୋ'ରି ପାଇଁ ହେ ପଂକଜମୁଖ ।୨।



ଯେତେ ଗାଳିଖାଅ ସେତେ ହସୁଥାଅ କାଳିଆସୁନା
ବସିଥାଅ ତୁମେ କେଡ଼େ ଆନନ୍ଦରେ ଉଡ଼ାଇ ବାନା ।୦।

କିଏ ଜାଣେ-ସେ ହସରେ
ସବୁକିଛି ଅଛି
ଦୁଃଖ ଅଛି ସୁଖ ଅଛି
ଆନନ୍ଦ ଭରିଛି
ମାୟା ଲଗାଇଛ ଆହେ ମାୟାଧର
କେହି ସେ ମାୟା ବୁଝେନା ।୧।

ମନ ପ୍ରାଣ ଦେଇ ଯେବେ
ଭଲ ପାଏ ମୁହିଁ
ଅଜାଣତେ ମୋର ତୁମେ
ମୋତେ ଦିଅ ଚାହିଁ
ସେତିକିରେ ମୋର କରୁଣା ସାଗର
ପେଟ ପୂରିଯାଏ ସିନା ।୨।



ମଥାରେ ତୁଳସୀମାଳ ଚନ୍ଦନର ଚିତା କପାଳରେ
ବାହୁରେ ଦୟଣାର ମାଳ ଦୁଲଭା ପଡ଼ିଛି ଗଳାରେ ।୦।

କେଡ଼େ ସୁନ୍ଦର ତୁମ ଠାଣି
ଆହେ ନୀଳମଣି
ଅପଲକ ନୟନେ ତୁମ
ସୁନ୍ଦର ଚାହାଣି
ଧୂପ ଦୀପ କର୍ପୂରର ବାସ ମହକାଏ ଚାରିଆଡ଼
ବଡ଼ ଦେଉଳ ବେଢ଼ାରେ ।୧।

ମୁଁ କ'ଣ ଡାକଇ ତୁମକୁ
ମୋର ସୁଖ ପାଇଁ
ତୁମେ ତ ଜାଣିଅଛ ସବୁ
ହେ ଜଗତ ସାଇଁ
କିଛି ନ ଜାଣିଲା ପରି କାହିଁକି ବା ଚାହିଁଅଛ ମୋତେ
ଦେହ ଭିତରଟା ଥରେ ।୨।



କେତେ ଆକୁଳତା ତୁମ ପାଇଁ ପ୍ରଭୁ
କେତେ ଯେ ବିକଳ ହୁଏ ମୁହିଁ
ଜାଣିକି ପାରନା ହୃଦୟ ବେଦନା
ଦରଶନ ଟିକେ ମିଳେ ନାହିଁ ।୦।

ମୋ ଜୀବନ ପଛେ ଗଲେ ଯାଉ ପ୍ରଭୁ
ମଥା ରହିଥାଉ ଶ୍ରୀପୟରେ
ତୁମ ନାମ ପ୍ରେମ ମେଣ୍ଟିଯାଉ ପ୍ରଭୁ
ସଂକୀର୍ତ୍ତନ ଆଉ ଭଜନରେ
ତୁମ ଗୁଣଗାନ କରୁଥାଏ ମୁଁ ଯେ
ଆନନ୍ଦେ ଅଧୀର ହୋଇ ।୧।

ଜୀବନରେ ମୋର ଯେତୋଟି ପାହାଚ
ସବୁଥିରେ ତୁମ ଦୃଷ୍ଟି ଥାଉ
ସବୁ କର୍ମ ମୋର ସମର୍ପି ଦେଇଛି
ତୁମ ଉଦ୍ଦେଶ୍ୟରେ ମହାବାହୁ
କ୍ଷମାକର ପ୍ରଭୁ ଦୋଷାଦୋଷ ମୋର
ଟୋପାଏ କରୁଣା ଦେଇ ।୨।



ରଥ ଉପରେ ମୋତେ ଦିଅ ଦରଶନ

ଆହେ ନୀଳାଦ୍ରି ଠାକୁର

ପୂରିଯାଉ ପେଟ ମୋର ଏତେ ଦିନକେ

ରଥକୁ ଦେଖି ତୁମର ।୦।

ଭାବ ଲଗାଇଛ କାହିଁ

ଭାବ ରସିଆ!

ମନକୁ ମୋ ମୋହିଅଛ

ନୀଳାଚଳିଆ

ଦୀନବାଂଧବ ହରି କର ଏ ଭବୁପାରି ଆଉ ଡେରି ନ କର ।୧।

କୃପାରେ କରୁଛ ଊଣା

କୃପା ସାଗର

କୃପା ନୟନରେ ଚାହଁ

ହେ ଚକ୍ରଧର

ତୁମ ଗୁଣ ଗାଉଥିବି ତୁମ ନାମ ଜପୁଥିବି ମୁଁ ନିରନ୍ତର ।୨।



୬୬

ଭରିଦିଅ ପ୍ରଭୁ ମୋର ହୃଦ ଅନ୍ତର
ଆଲୋକର ଜ୍ୟୋତି ପୁଣି କୃପା ନିର୍ଝର ।୦।

ନାଚିଉଠ ମୋର ମନ ଉପବନେ
ଖୋଜେ ତୁମକୁ ମୁଁ ଶୟନେ ସ୍ୱପନେ
ହୃଦୟେ ମୋ ବିଜେକର ଗିରିଧାରୀ
ଯାଏ ମୁଁ ତୁମର ପଥ ଅନୁସରି
କେଡ଼େ ଶୋଭାବନ ଆହେ ନବଘନ ରୂପ ତୁମର ।୧।

ଲୋଡ଼େ ପ୍ରଭୁ ତୁମ ଟୋପାଏ କରୁଣା
କାହିଁ କର ମୋତେ ସବୁଥିରେ ଊଣା
ଗାଇ ତୁମ ଗୀତ ଆତୁର କଣ୍ଠରେ
ହଜିଯାଏ ପ୍ରଭୁ ତୁମ ଗୀତ ସୁରେ
ତୁମ ରୂପକାନ୍ତି ଭରିଦିଏ ଶାନ୍ତି ଅନ୍ତରେ ମୋର ।୨।



ଝରିଯାଉ ନିଃଶବ୍ଦରେ ଏ ଜୀବନ
ତବ ଶ୍ରୀଚରଣେ
ମୁକ୍ତିଲଭୁ ପରାଣ ମୋ ସବୁଦିନ
ପାଇଁ ମହାଶୂନ୍ୟେ ।୦।

ଆକାଶର ନୀଳିମାରେ
ଅବା ସାଗର ଢେଉରେ
ତୁଳସୀର ମହକରେ
ଅବା ଚନ୍ଦନ ବାସ୍ନାରେ
କୋଟି ହୃଦୟର ଦେବତା ତୁମେ ହେ
ବିରାଜୁଛ ସବୁଠାରେ ସବୁ କ୍ଷଣେ ।୧।

ଶରଧା ବାଲିରେ ପାଦ
ମୋର ପଡ଼ିବ ବା କେବେ
ଲଭିବି ସରଗ ସୁଖ
ସମର୍ପିତ ଭକ୍ତିଭାବେ
ଘେନି ପଂଚଭୂତ ହୋଇଛି ଜନ୍ମିତ
ସାହା ତୁମେ ମୋର ଜୀବନ ମରଣେ ।୨।



ରଥ ତୁମ ଦେଖି ମନଯାଏ ଲାଖି
ଆହେ ନୀଳାଦ୍ରି ଈଶ୍ୱର
ମନ ପୂରିଯାଏ ପେଟ ପୂରିଯାଏ
ଅହୋ ଭାଗ୍ୟ ଅଧମର ।୦।

ତୁମରି ଇଚ୍ଛାରେ ଚାଲେ ଏ ଜଗତ
ଧନ୍ୟ ଯେ ତୁମର ମହିମା ଅନନ୍ତ
ତୁମକୁ ଜପିଲେ ଝରଇ ଅମୃତ
ଘେନ ପ୍ରଭୁ ମୋର ଭକ୍ତି ପ୍ରଣିପାତ
ଯେତେ ପାପୀ ଜନ ଅଛନ୍ତି ଜଗତେ ତାଙ୍କୁ ନାଶ କର ତୁମ ଇଚ୍ଛା ମତେ
ଜଗତ ଉଦ୍ଧାର କର ।୧।

ଜୀବନରେ ଯେତେ ମିଳିଥିଲା ସୁଖ
ସେ ସବୁ ତୁମର ଇଚ୍ଛା ପଦ୍ମମୁଖ
ରଥ ଗଡ଼ିଗଲେ ଦୁଃଖ ଗଡ଼ିଯାଏ
ତୁମ ଉପସ୍ଥିତି ଅନୁଭୂତ ହୁଏ
ତୁମକୁ ସୁମରି ହୁଏ ପଥଚାରୀ ବିଶ୍ୱାସେ ମୋହର ମିଳ ତୁମେ ହରି
ଏତିକି କରୁଣା କର ।୨।



ମୋର ଜୀବଧନ କାଳିଆ ରତନ

କାହିଁକି ବସିଛ ମଉନ ହୋଇ

ଡାକି ଡାକି ମୋର ତଣ୍ଟି ଶୁଖିଲାଣି

କିଛି ବି ଉତ୍ତର ଦେଉନ କାହିଁ ।୦।

ଥରେ ଦେଖିଦେଲେ କଳାବଦନକୁ

ସବୁ ଦୁଃଖ ଭୁଲିଯାଏ

ଥରେ ଚାଖିଦେଲେ ଅବଢ଼ା ଅନ୍ନକୁ

ପେଟ ମୋର ପୂରିଯାଏ

ସକଳ ସୃଷ୍ଟିର ଆରମ୍ଭ ତୁମଠୁ ବିଲୟ ବି ହୋଇଥାଇ ।୧।

ମୋ ମନର ବଡ଼ଦାଣ୍ଡେ ଦେଖେ ମୁହିଁ

ତୁମକୁ ହେ ଚକାଆଖି

ସହସ୍ର କନ୍ଦର୍ପ ରୂପ ସେଇ ରୂପ

ସହ ସମାନ ହେବ କି

ବିପଦର ବଂଧୁ ହେ କରୁଣା ସିନ୍ଧୁ  କପାକର ଦେଖାଦେଇ ।୨।



ତୁମେ ସୂର୍ଯ୍ୟଠାରୁ ତେଜିୟାନ୍
ଜହ୍ନଠୁ ଶୀତଳ
ପବନଠୁ ବଳବାନ୍ ତୁମେ
ଜଳଠୁ ତରଳ ।୦।

ପାଟ ପୀତାମ୍ବରୀ ପିନ୍ଧି
ଦିଶ କି ସୁନ୍ଦର
ସରଗର ପାରିଜାତ
ମୁଠାରେ ତୁମର
କେଡ଼େ କମନୀୟ ରୂପ ତୁମ
କେଡ଼େ ପବିତ୍ର ତୁମ ନୀଳାଚଳ ।୧।

ରଥ କହେ ସିଏ ବଡ଼
ପଥ କହେ ବଡ଼
ବଡ଼ କିନ୍ତୁ ତୁମେ ପ୍ରଭୁ
ଦିଶ ଚାରିଆଡ଼
ତୁମ ପାଶେ ଛୋଟ ହୋଇ ରହି
ଥାଏ ପ୍ରଭୁ ହେ ସଦା କାଳକାଳ ।୨।



ଧୂଆଁ ଧୂଆଁ ମେଘସବୁ ଯେବେ ଘୋଟି ଆସେ
ଜହ୍ନ ହୋଇ ଦେଖାଦିଅ ମୋ ମନ ଆକାଶେ
ଟଳମଳ ହୁଏ ପାଦ ରଖପ୍ରଭୁ ଜଗନ୍ନାଥ
ବଂଚିବାର ରାହା ମିଳେ ତୁମରି ନିର୍ଦ୍ଦେଶେ ।୦।

ଲୁଚି ଲୁଚି ଦେଖାଦିଅ
ମୋ ମନ ଗହନେ
କେତେବେଳେ ସ୍ୱପ୍ନରେ ତ
କେବେ ଜାଗରଣେ
ତୁମେ ମୋର ବଂଧୁ ତୁମେ ମୋର ସଖା
ବଂଚିଅଛି ମୁହିଁ ତୁମରି ସକାଶେ ।୧।

ଅନାଥର ନାଥ ତୁମେ
ଅମୃତର ଧାରା
ଅଗତିର ଗତି ତୁମେ
ସ୍ନେହର ପସରା
ତୁମର ବାମନରୂପ ଦେଖାଅ ହେ
ପ୍ରଭୁ ବଡ଼ଦାଣ୍ଡେ ତୁମ ନନ୍ଦିଘୋଷେ ।୨।



ଯେତେ ମୋର ଇଚ୍ଛା ସବୁ
ବଡ଼ଦାଣ୍ଡେ ଦେଲି ମୁଁ ଗଡ଼େଇ
ତାକୁ ସବୁ ଧରିନେଲୁ
କାଳିଆରେ ତୁ ହାତ ବଢ଼େଇ ।୦।
ମନ ଦରପଣେ ମୋର
ଦେଖେ ତୋର ଛବି
କାତରେ ଡାକଇ ସଦା
କେତେ ଭାବି ଭାବି
ଦେଖାଦେଇ ଲୁଚିଯାଉ କାହିଁକିରେ
କାଳିଆ ତୁ ନେ ମୋତେ ବାଟ କଢ଼େଇ ।୧।
ଯିଏ ଯାହା କହୁପଛେ
କିଛି ଶୁଣିବିନି
କେତେବେଳେ ଦେବୁ ତୁହି
କେହି ଜାଣିବେନି
ତୋ ଦେହରୁ ବାସ୍ନା ଦେଇ ଜୀବନର
ଚଲାପଥ ମୋର ଦେଏ ମହକାଇ ।୨।



୭୩

ଦୀନ ବାଂଧବ ହେ, ଦୀନଜନେ କର ଦୟା
କେ କାହିଁ ବୁଝିବ, କେ କାହିଁ ଜାଣିବ
ଯେତେ ଯାହା ଘଟେ ସବୁ ତ ତୁମରି ମାୟା ।୦।

ଆକାଶ ପରି ପରିବ୍ୟାପ୍ତ ତୁମେ
ସାଗର ପରି ଅତଳ
ଲହରୀ ପରି ଛଳଛଳ ତୁମେ
ପର୍ବତ ପରି ନିଶ୍ଚଳ
କେଉଁ ଭାବରେ ବାଂଧିଛ କେଉଁ ମାୟା ଲଗାଇଛ ସାରା ଦୁନିଆ ।୧।

କେଡ଼େ ନିରିମଳ ବେଢ଼ାଟି ତୁମ
ତୁଳସୀ ତୁଳସୀ ବାସେ
କେଡ଼େ ଶୋଭାବନ ଚାହାଣି ତୁମ
ପାରିଜାତ ଫୁଟେ ହସେ
ଧନ୍ୟ ତୁମ ଲୀଳାଖେଳା ବୁଝିକେ ପାରିବ ଭଲା ନୀଳାଚଳିଆ ।୨।



ତୁମ ନାମ ଧରିଧରି ଦିନ ମୋର ଯାଉ ସରି ଆହେ ମହାବାହୁ
କାହିଁକି ଲଗାଅ ଭାବ କୂଳରେ ଲଗାଅ ନାବ ଜୀବ ଥାଉ ଥାଉ ।୦।

ସଂସାର ସାଗର ଏଡ଼ିକି ବିଷମ
ଥଳକୂଳ ପାଏନା ତାହାର
ମିଛମାୟା ଢେଉ ସବୁ ଏକାଠି ଏଇଠି
ମୋତେ ଏଠୁ ଶୀଘ୍ର ପାରିକର
ଲଗାଇଦିଅ ଡୋରି ପାଶେଯାଏ ତୁମରି
ଶ୍ରୀପୟରେ ମନ ଲାଖିଯାଉ ।୧।

ଏକକୁ ଆରେକ ବଳି ସଭିଏଁ ଦିଶନ୍ତି
କାହାକୁ ବା କରିବି ବିଶ୍ୱାସ
ଯନ୍ତ୍ରଣାର ଜଉଘରେ ଛଟପଟ ହୁଏ
ଶାନ୍ତିରେ ବି ମାରିନି ନିଃଶ୍ୱାସ
ତୁମରି ପଥ ସୁମରି ଡାକୁଛି ମୁଁ ଗିରିଧାରୀ
ମୋର ଦିନ ସରିଯାଉ ।୨।



ତୁମକୁ ଚାହିଁଲେ ଥରେ ଆଖି ଫେରେଇ ହୁଏନି
ତୁମକୁ ଭାବିଲେ ମନ ଆଉ କୁଆଡ଼େ ଯାଏନି ।୦।

କି ସୁନ୍ଦର ଦିଶୁଅଛ ତୁମେ
ବସି ରତ୍ନବେଦୀ ପରେ
ଦିଶ କେଡ଼େ ଶୋଭାବନ ହସି
ତୁମ ନାଲି ଅଧରରେ
ତୁମେ ମୋର ପ୍ରାଣନାଥ ତୁମେ ଥାଉଥାଉ ମୋତେ ଅନାଥ କରନି ।୧।

ଚକାଚକା ଦୁଇ ଆଖି ତୁମ
କଳା କମଳ ସତେକି
ଇନ୍ଦ୍ରବନେ ପାରିଜାତ ଲାଗେ
ସତେ ମହକି ଉଠେକି
ଏ ଭବରୁ ମୋତେ ପାରିକର ଆହେ ଚକ୍ରଧର ଦୂରେଇ ଦିଅନି ।୨।



ଦୁଃଖ ନାଶନ ହରି ଏ ଭବରୁ କର ପାରି ସବୁଦିନକୁ
ଏତେ ବାଟୁ ଆସେ ଧାଇଁ ଦୁଃଖ ଜଣାଇବା ପାଇଁ ଶ୍ରୀମନ୍ଦିରକୁ ।୦।

ଜୀବନ ବିତାଇ ଦେଲି
ତୁମ ଗୀତ ଗାଇଗାଇ
କେତେ ଯେ ଡାକିବି ପ୍ରଭୁ
ମୋ ଡାକ ଶୁଣ ତ ନାହିଁ
ହେଲିଣି ମୁଁ ଏତେସରି ତୁମକୁ ତ ଅନୁସରି ଡାକିବି ଆଉ କାହାକୁ ।୧।

କରୁଛି ମୁଁ ନିବେଦନ
ଦାରୁବ୍ରହ୍ମ ସନାତନ
ସରିଯାଉ ଏ ଜୀବନ
ପାଇ ତୁମ ଦରଶନ
କୃପାକର ପ୍ରଭୁ କୃପାସାଗର, କ୍ଷମା କରିଦିଅ ମୋର ଦୋଷାଦୋଷକୁ ।୨।



ଷଷ୍ଟି

କ୍ଷମା ସାଗର ହେ ସବୁଦୋଷ କ୍ଷମାକର
ଯାହା ବି କରିଛି ଦୋଷ, ସେସବୁ ଅଜାଣତେ ମୋର ।୦।

ତୁମେ ମୋର ତୀର୍ଥ ତୁମେ ମୋ ବୈକୁଣ୍ଠ
ତୁମେ ମୋର ଭାଗ୍ୟ ତୁମେ ପୁଣ୍ୟପୀଠ
ତୁମେ ମୋ ଆନଂଦ ପ୍ରଭୁ ନିତ୍ୟାନନ୍ଦ
ତୁମ ବିନା ମୁହିଁ ଗଣଇ ପ୍ରମାଦ
ଆସ ଆସ ଅବତରୀ ଧନ୍ୟକର ଜୀବନ ମୋହର ।୧।

ଏ ଦେହ ତୁମର ଏ ମନ ତୁମର
ଆହେ ପ୍ରାଣନାଥ କରୁଣା ଭଣ୍ଡାର
ତୁମେ ଏକା ସତ୍ୟ ଏଇ ଦୁନିଆରେ
ଅସତ୍ୟ ଅଧର୍ମ ଦୂର କର ବାରେ
ଚିନ୍ତାରେ ମୋ ଆସ ଚେତନାରେ ଆସ ପ୍ରଭୁ ଗିରିଧର ।୨।



ପୂର୍ଣ୍ଣବ୍ରହ୍ମ ସାଇଁ ତୁମେ ପରମାନନ୍ଦ ଗୋସାଇଁ
ଆସ ଏଠି ଅବତରି ପାପୀ ଉଦ୍ଧାରଣ ପାଇଁ ।୦।

କାତରେ ଡାକେ ଭକତ
ତା' ଡାକକୁ କର ସତ
ମିଛମାୟାରେ ଘାଣ୍ଟୁଛ
କାହିଁ ପରା ଏ ଜଗତ
ପାପପୁଣ୍ୟ ଆଧାରରେ କଳୁଅଛ ଏ ଜୀବନ, ହେ ଜଗତ ସାଇଁ ।୧।

ସକଳ ଦୁଃଖ ଯାତନା
ଯେତେ ସବୁ ସମ୍ଭାବନା
ସବୁକୁ ଆଦରି ନେଲି
ତୁମ ସୃଷ୍ଟି ସଂରଚନା
ନିର୍ବିକାର ନିରଂଜନ ମୋ ପ୍ରଣାମ ଘେନ, ଅଭିମାନ କରନାହିଁ ।୨।



ସବୁ ତୀର୍ଥ ମୋର ସେହି ତୁମ ଶ୍ରୀଚରଣେ
ଏଠି ସେଠି ବୁଲୁଛି ମୁଁ କାହିଁ ଅକାରଣେ ।୦।

ଭାଗ୍ୟ ସାଜିଛି ଭଗାରି
ବସିଛି ମୁଁ ମନମାରି
ଭଜୁଛି ତୁମରି ନାମ
ଦେଖାଦିଅ ଦଇତାରି
ତୁମେ ହୁଅ ମୋର ସାହା ଆହେ ଚଉବାହା, ଜୀବନେ ମରଣେ ।୧।

ରକତ ହେଲାଣି ପାଣି
ଡାକି ଡାକି ମୁଁ ମଲିଣି
ଭକତରେ ଗଣିଲନି
କାହିଁକି ହେ ଚକ୍ରପାଣି
ରଖ ବା ନ ରଖ, ବିତୁ ଏ ଜୀବନ ମୋର ତୁମରି ଶରଣେ ।୨।



ନୀଳବ୍ରହ୍ମ ସନାତନ ପରଂବ୍ରହ୍ମ ହରି
ପୂର୍ଣ୍ଣବ୍ରହ୍ମ ନିରଞ୍ଜନ ଗୋଲୋକବିହାରୀ ।୦।

ତୁମେ ମୋର ସିଦ୍ଧି
ତୁମେ ତ ସାଧନା
ତୁମେ ମୋର ମନ
ତୁମେ ତ ଭାବନା
ଏତିକି ମିନତି କରେ ତୁମ ପାଶେ, ଇନ୍ଦ୍ରିୟାତୀତ ହୋଇ
ମୋର ଦିନ ଯାଉ ସରି ।୧।

ବିଷୟ ଭୋଳରେ
ହୁଏ ଛଟପଟ
ବୁଝେନାହିଁ କାହା
ଛନ୍ଦ କି କପଟ
କାହିଁ ପ୍ରଭୁ ଭାବଗ୍ରାହୀ ବସିଛ ମଉନ ହୋଇ ସବୁ ଜାଣିକି
ନ ଜାଣିଲା ପରି ।୨।



ପାଦତଳେ ପ୍ରଭୁ ଜାଗା ଟିକେ ଦିଅ
ଦୋଷ ମୋର ଧର ନାହିଁ
ଜାଣିଶୁଣି କିଛି ଦୋଷ ମୁଁ କରିନି
ଦୋଷୀ ହେବି କାହା ପାଇଁ ।୦।

କରିଛି ଯେତେ ମୁଁ ପୂଜା ଆରାଧନା
ଯେତେ ସବୁ ବ୍ରତ ଯେତେ ଉପାସନା
ସେ ସବୁକି ନିରର୍ଥକ କୁହ ପ୍ରଭୁ କାହିଁ
ବସିଛ ନିରବ ହୋଇ ।୧।

ଯେତେ ମାୟା ମୋହ କାମ କ୍ରୋଧ ଲୋଭ
ଗର୍ବ ଅହଂକାର ପାପ ଆଦି ସର୍ବ
କରେ ମୋତେ କବଳିତ ହୁଏ ମୁଁ ନିନ୍ଦିତ,
କେବଳ ତୁମରି ପାଇଁ ।୨।



୮୨

ଅନ୍ତରତମ ହେ ! ଅନ୍ତରକୁ ବୁଝ ନାହିଁ
ଅପରାଧୀ ବୋଲି ଭାବୁଛ କି ମୋତେ
ଅପରାଧ କରି ନାହିଁ ।୦।

ତମେ ତ ଦେଇଛ ବିଦ୍ୟା ବୁଦ୍ଧି ବଳ
କଳା କଉଶଳ ଆଦି
ତମେ ବତାଇଛ ବଂଚିବାର ବାଟ
ସବୁ ସାଧନାର ସିଦ୍ଧି
ଜନମ ଜନମ ଚାହିଁ ମୁଁ ରହିଛି
ତୁମକୁ ପାଇବା ପାଇଁ ।୧।

ଯେତେ ଦୁଃଖ ପୁଣି ଯେତେ ଅବସାଦ
ସବୁ ତ ଦେଇଛ ମୋତେ
ସୁଖର ସାଗର ଶୁଖାଇଛ କାହିଁ
ଭାବୁଛି ମୁଁ ଅବିରତେ
କାହିଁକି କରୁଛ ପାତର ଅନ୍ତର ସତ କୁହ ଭାବଗ୍ରାହୀ ।୨।



୮୩

ତୁମକୁ ଭରସା କରି ଗଢ଼ିଅଛି ମୋର ସୁଖର ସଂସାର
ତୁମରି ଆଶ୍ରାରେ ତିଆରିଛି ମନେ ଏକ ସୁନ୍ଦର ମନ୍ଦିର ।୦।

ସେ ମନ୍ଦିରେ ପୂଜୁଛି ତୁମକୁ
ଭାବର ଅର୍ଘ୍ୟଥାଳି ଧରି
ଧୂପଦୀପ ଚନ୍ଦନରେ ନାହିଁ ଲୋଡ଼ା
ମୁଁ ଭକ୍ତିର ପୂଜାରୀ
ତୁମରି କରୁଣା କରନାହିଁ ଊଣା ଅନୁରୋଧ ରକ୍ଷା କର ।୧।

ବିପଦରେ ଡାକୁଛି ତୁମକୁ
ସଂପଦେ ଭୁଲି ମୁଁ ଯାଉଛି
ସେଥିପାଇଁ କର ଅଭିମାନ
ଏ କଥା ନିଶ୍ଚୟ ଜାଣିଛି
ଯଦିବା କରିଛି ଦୋଷ ଆହେ ଅପ୍ରକାଶ, ମୋତେ କ୍ଷମାକର ।୨।



୮୪

କାହିଁକି ଦେଉଛ ଦୁଃଖ ଆହେ ପଦ୍ମମୁଖ
ସୁଖ କ'ଣ ମୋର କପାଳରେ ନାହିଁ
କାହିଁ ତୁମେ ହେଉଛ ବିମୁଖ ।୦।

ତୁମେ ତ ଜାଣିଛ ପ୍ରଭୁ
ମୋ ମନର ଯେତେ କଥା
ମୁଁ କିନ୍ତୁ ଜାଣିପାରୁନି
ତୁମ ମନ ନିରବତା
ଦୁଃଖନାଶନ ହରି ଆହେ ଗିରିଧାରୀ କାହାକୁ କହିବି ରଖରଖ ।୧।

ମହାପାପୀ ଅଜାମିଳ
ଜପି ଜପି ତରିଗଲା
ଶ୍ରୀବତ୍ସ ବ୍ରାହ୍ମଣ କୋପେ
ଗୋଇଠାଟେ ମାରିଥିଲା
ସେ ସବୁ ତ ସହିଲ ପ୍ରଭୁ, କୁହ ମୋତେ କେବେ ମୋର ଟଳିବ ସଂକଟ ।୨।



ମୋ ମନର ନିରବତା ମୋ ଜୀବନ ଆକୁଳତା
କାହାକୁ କହିବି ପ୍ରଭୁ କିଏ ଶୁଣିବ ମୋ କଥା ।୦।

ଭାବକୁ ଆପଣାଇ ନିଅ
ଅଭାବକୁ କର ଦୂର
ବିଚିତ୍ର ଲୀଳା ତୁମ ପ୍ରଭୁ
ବୁଝେନାହିଁ ମୋ ଅନ୍ତର
ଜାଣେନା ମୁଁ ମୋ ସୁଖରେ କିଏ ସୁଖୀ ହେବ
କିଏ ବା ଶୁଣିବ ମୋ ଅନ୍ତର ବ୍ୟଥା ।୧।

ଚାହୁଁ ଚାହୁଁ ସରିଯାଉଛି
ଜୀବନ ମୋହର ପ୍ରଭୁ
କେବେ ବି ଦେଇନ ଯାହା ମୁଁ
ଚାହିଁଛି ଜୀବନେ ସବୁ
ଜାଣେନା ମୁଁ କେବେ ତୁମ ଦୟା ହେବ
ମୋ ଗୁହାରି ଶୁଣିବ ଆହେ ଦାରୁ ଦେବତା ।୨।



ବିପଦର ବଂଧୁ ତୁମେ ସଙ୍କଟର ସଖା
ଏତିକି ମାଗୁଣୀ ମୋର
ବଂଚିଥିବା ଯାଏ ତୁମେ ଦେଉଥିବ ଦେଖା ।୦।

ଅତୀତ ମୋ ଝୁରି ମରେ
ବେଳେବେଳେ ଅଶାନ୍ତିରେ
ତୁମକୁ କହିଛି ସବୁ
ବସାଇକି ଅନ୍ତରରେ
ଦେଖାଇଛ ପଥ ଜଗତର ନାଥ
ମନେ ଦେଇ ନାହଁ ଶଙ୍କା ।୧।

ଅଜପା ନାମଟି ତୁମ
ଜପୁଛି ମୁଁ ଦିନରାତି
ତୁମ ବିନା କାହାକୁ ମୁଁ
କରିବି ବା ମୋର ସାଥୀ
ମନରୁ ମୋ ନେଇଯାଅ ପ୍ରଭୁ
ଅଛି ଯେତେ ଗବ ଅହମିକା ।୨।



ମୋ ମନର ବଡ଼ଦାଣ୍ଡେ
ତୁମ ନନ୍ଦିଘୋଷ ଗଡ଼ୁ
ହାଉଯାଉ ଭକତ ମେଳରେ
ମୋ ଉପରେ ଦୃଷ୍ଟି ଟିକେ ପଡ଼ୁ ।୦।

କେଡ଼େ ପବିତ୍ର ତୁମ ଶ୍ରୀମନ୍ଦିର
କେଡ଼େ ବିଚିତ୍ର ତୁମ ଲୀଳା
କେଡ଼େ ମଧୁର ତୁମ ଅବଢ଼ା
କେଡ଼େ ସୁନ୍ଦର ଚକାଡ଼ୋଳା
ଅପେକ୍ଷା କରିଛି କହିବ କେବେ ପ୍ରଭୁ
ଚାଲିବାର ପଥ ନିଜ ଆଡ଼ୁ ।୧।

ବାଇଶି ପାହାଚେ ବସିଛି ମୁହିଁ
ଦେଖୁଛି ନୀଳଚକ୍ରବାନା
ଯାହାବି ମାଗିବି ନିଶ୍ଚୟ ଦେବ
କେବେବି କରିବନି ମନା
ଛାଡ଼ିବି ଜୀବନ ବଡ଼ଦାଣ୍ଡେ ତୁମ
ରଥ ଦଉଡ଼ିକୁ ଭିଡ଼ୁଭିଡ଼ୁ ।୨।



ଏଡ଼ିକି ଦରଦୀ ଠାକୁର ତୁମେ ଯେ
ପ୍ରେମମୟ ଆପଣାର
କୋଟିଏ ଜନମ ସାରି ମୁଁ ଆସିଛି
ତନୁ ନେଇ ମାନବର ।୦।

ଏ ମହୀମଣ୍ଡଳେ ନାହିଁ କେହି ଜଣେ
ତୁମପରି ଦୟାଶୀଳ
ଅଜ୍ଞାନ ଅଂଧାରେ ହୁଏ ଛଟପଟ
ପାଏନାହିଁ ଥଳକୂଳ
କରୁଛି ଗୁହାରି ହେ ମାୟା ବିହାରୀ ମାୟାରୁ ଉଦ୍ଧାର କର ।୧।

ଜୀବର ଅନ୍ତରେ ଜୀବନ ଦେଖୁଛି
କେବେ ଛାଡ଼ିଯିବ ପ୍ରାଣ
ପିଣ୍ଡରେ ବ୍ରହ୍ମାଣ୍ଡ ମଥା ପିଟୁଥିବ
କରି ଆତ୍ମା ପରିତ୍ରାଣ
ସବୁ ତ ଏଠାରେ ଅଦେଖା ଅବୁଝା ତୁମେ ସବ୍ ସୂତ୍ରଧର ।୨।




ଶରଣ ରକ୍ଷଣ ମହାବାହୁ ନୀଳାଚଳ ଈଶ୍ୱର
ବୁଝିକେ ପାରିବ ଲୀଳା ଖେଳା ତୁମ
ମଥା ମୋର ରହିଥାଉଁ ତୁମ ଶ୍ରୀପୟର ।୦।

କିବା ଉପହାର ଦେବି ମୁଁ ତୁମକୁ
କିଛି ନାହିଁ ପାଶେ ମୋର
କିବା ନଇବେଦ୍ୟ ଅରପିବି ମୁଁ ଯେ
ତୋଷ ହେବ ଚକ୍ରଧର
ମାୟାରେ ବାନ୍ଧିଛ ସାରା ଜଗତକୁ ସବୁକିଛି ଅଗୋଚର ।୧।

କୃପାକର ମୋତେ ଆହେ ଦୟାମୟ
ଭବରୁ କର ହେ ପାର
ଚିତ୍ତ ବିନୋଦିଆ ଠାକୁର ତୁମେ ହେ
ଚିତ୍ତରେ ଅଭୟ ଭର
କରନାହିଁ ହେଳା ଆହେ ନନ୍ଦବଳା ଏତିକି ଗୁହାରି ମୋର ।୨।



କେମିତି କରିବି ଜୟଗାନ ତୁମ ଚକାନୟନ
କି ଦେଇ ପୂଜିବି ତୁମକୁ ହେ ପ୍ରଭୁ ମାନଭଂଜନ ।୦।

ବିଶାଳ ହୃଦୟ ତୁମ
ସାଗର ପରିକା
ଭବଜଳେ ଭାସୁଅଛି
ମୁହିଁ ଏକାଏକା
ଆସ ମୋର ସାଥୀ ହୁଅ ପତିତପାବନ ।୧।

ଆକାଶର ନୀଳ ତୁମେ
ସାଗରର ଢେଉ
ତୁମରି ଆଶ୍ରାରେ ମୋର
ଜୀବନଟା ଯାଉ
ବଂଧୁ ବୋଲି ଭାବି କରେ ମୁଁ ଯେ ନିମନ୍ତ୍ରଣ ।୨।



ନିରାଶାର ଅଂଧକାର ଯେବେ ଘୋଟି ଆସେ
ପ୍ରଭୁ ତୁମେ ଦେଖାଦିଅ ଆଶାର ଆକାଶେ ।୦।

ତୁମେ ତ ଢାଳିନ ମଥାରେ ମୋହର
ତୁମ ଆଶୀର୍ବାଦ ବାରି
ତୁମେ ତ ଦେଇନ ଅଧମକୁ କେବେ
କାହିଁ କିଛି ମନଭରି
ଅଗତିର ଗତି ଦିଅହେ ମୁକତି ଜଂଜାଳରୁ ଅବଶେଷେ ।୧।

ତୁମ ବିନା ଆଉ କିଏ ଅବା ଅଛି
ବୁଝିବ ମୋର ଅନ୍ତର
କେତେ ଡାକିଡାକି ଗୁହାରି କରୁଛି
କାହିଁ କରିଦିଅ ଦୂର
ଥରେ ଚାହିଁଦେଖ କେମିତି ହେ ପ୍ରଭୁ ଦୁଃଖରାହୁ ମୋତେ ଗ୍ରାସେ ।୨।



ବଂଧନ ଯେବେ ଲଗାଇଲ ପ୍ରଭୁ
ବାଞ୍ଛିତ ବସ୍ତୁ ଦେଇ
ସେବା କରୁଥିବି ଜୀବନଯାକ
ସେବକଟିଏ ହୋଇ ।୦।

କେଡ଼େ ଭାଗ୍ୟବାନ ମଣିବି ନିଜକୁ
ତୁମ ଶ୍ରୀଚରଣେ ଥାଇ
ହସି ହସି ଯିବି ସ୍ୱର୍ଗଦ୍ୱାରକୁ ମୁଁ
ବଇକୁଣ୍ଠ ସୁଖ ପାଇ
ତୁମ ଯଶବାନା ଉଡ଼ାଇବି, ଗୁଣ ତୁମ ଗାଇଗାଇ ।୧।

ଧନ୍ୟ ଏ ଜୀବନ ହେବ ମୋର ପ୍ରଭୁ
ତୁମ ନାମ ଧରି ଗଲେ
ବୁଝିପାରେ ନାହିଁ ଯାହା ତୁମେ କର
ମୋ ଦୃଷ୍ଟିର ଅନ୍ତରାଳେ
ତୁମେ ଥିଲେ ମୋର ସବୁକିଛି ଅଛି, ମୁକ୍ତି ମୋର ଲୋଡ଼ା ନାହିଁ ।୨।



କାହାକୁ କେଉଁ ରୂପେ ଦିଅ ଦରଶନ
ଭାବିଲେ ହେଉଛି ଆଶ୍ଚର୍ଯ୍ୟଚକିତ
ଦେହରେ ମୋ ଆସେ ଶିହରଣ ।୦।
ବ୍ରହ୍ମର ନାହିଁ ଆକାର
ନାହିଁ ତ ପରିଧି
ଅସୀମ ଅନନ୍ତ ସେହି
ସତେ ମହୋଦଧି
ନୀଳବ୍ରହ୍ମ ଜଗନ୍ନାଥ
ନାମରେ ପୂଜିତ
ସର୍ବ ବିଦ୍ୟମାନ ତୁମେ
ସତ୍ୟ ଓ ଶାଶ୍ୱତ
ପୂର୍ଣ୍ଣବ୍ରହ୍ମ ପ୍ରଭୁ ଅଭିନ୍ନ ଅବ୍ୟକ୍ତ ଆହେ ନିତ୍ୟ ନିରଞ୍ଜନ ।୧।
ଅଣୁଠାରୁ କ୍ଷୁଦ୍ର ତୁମେ
ବ୍ରହ୍ମାଣ୍ଡଠୁ ବଡ଼
ତୁମେ ତ ଜୀବନ ପ୍ରଭୁ
ତୁମେ ପୁଣି ଜଡ଼
ସାଗରଠୁ ସ୍ୱର୍ଗଦ୍ୱାର
ତୁମେ ପରିବ୍ୟାପ୍ତ
ବିନ୍ଦୁଠାରୁ ସିନ୍ଧୁଯାଏ
ତୁମେ ବିରାଜିତ
ଶୂନ୍ୟର ସ୍ୱରୂପ ଆହେ ଶୂନ୍ୟବ୍ରହ୍ମ ତୁମେ ସତ୍ୟ ସନାତନ ।୨।



ମନ ମୋହର ଯାଏ ଲାଖି ଆହେ ଚକାଆଖି ବଡ଼ ଦେଉଳେ
ଆସିଛି ଟାଣି ହୋଇ ତୁମ ଦରଶନ ପାଇଁ ମୁଁ ନୀଳାଚଳେ ।୦।

ଆଗରେ ଦିଶୁଛି ପଥ
କାହିଁ ଯେ କେତେ ଦୂର
ତୁମକୁ ସାଥେ ନନେଇ
କେମିତି ହେବି ପାର
ଅରୂପରେ ରୂପ ଆହେ ବିଶ୍ୱରୂପ କର ହେ ଉଦ୍ଧାର ଡାକୁଛି ମୁଁ ସବୁବେଳେ ।୧।

ଚାରିଆଡ଼େ ଅଂଧକାର
ଘୋଟିକି ରହିଅଛି
କେବେ ବା ମିଳିବ ମୁକ୍ତି
ଏ ମନ ଚାହିଁଅଛି
ବିଶ୍ୱବ୍ରହ୍ମାଣ୍ଡର ଅଧୀଶ୍ୱର ତୁମେ ମଥା ନଇଁଯାଏ ଶ୍ରୀଚରଣେ ବଳେବଳେ।୨।



ବନ୍ଧା ପଡ଼ିଅଛି ଜୀବନ ମୋହର ତୁମ ପାଦତଳେ ପ୍ରଭୁ
ରଖିଲେ ରଖିବ ମାରିଲେ ମାରିବ ତୁମକୁ ଅର୍ପିଛି ସବୁ ।୦।

ତୁମରି ଆଜ୍ଞାରେ କୋଟି ଜନମର
ଦୁଃଖ ମୋର ଚାଲିଯିବ
କାଳ ତ ଅନାଇ ଦେଖୁଛି କେମିତି
ମୋତେ ଦୁର୍ବଳ କରିବ
ଦେଖୁନି ଆଲୋକ ଆହେ ପଦ୍ମମୁଖ ଜୀବ ଚାଲିଯାଉ
ତୁମ କଥା ଭାବୁ ଭାବୁ ।୧।

ପିଣ୍ଡରେ ବ୍ରହ୍ମାଣ୍ଡ ଖଣ୍ଡଖଣ୍ଡ ହୋଇ
ଛିଡ଼ି ପଡୁଛି କି ସତେ
ହରାଉଛି ମୁହିଁ ମନୋବଳ ପ୍ରଭୁ
ରଖିଥିଲି ପାଶେ ଯେତେ
କରୁଛି ଗୁହାରି ଆହେ ଗିରିଧାରୀ ତୁମ ନାମ ଜପି
ଜୀବନ ଦୀପ ମୋ ଲିଭୁ ।୨।



କେତେ ଯେ ବୁଲିଲି ଜୀବନସାରା ମୁଁ ତୁମକୁ ଭେଟିବା ପାଇଁ
ଏଡ଼ିକି ନିର୍ଦ୍ଦୟ ତୁମେ ପ୍ରଭୁ ମୋର ଦେଖା ଟିକେ ଦେଲ ନାହିଁ ।୦।

ଦିନ ରାତି ହୁଏ ତୁମରି ହାତରେ
ମେଘରୁ ଝରଇ ଜଳ
କେତେବେଳେ ହୁଅ ମୃଦୁ ସମୀରଣ
କେତେବେଳେ ମହାକାଳ
କାହାଠୁ ହରୁଛ କାଳିମା କଳୁଷ କାହାକୁ ଦେଉଛ ତୁମରି ଆଶିଷ
ହାତ ତୁମ ଖୋଲି ଦେଇ ।୧।

କାହାକୁ ଦେଉଛ ସ୍ୱପ୍ନ ସଂଭାବନା
କାହାକୁ ଦେଉଛ ମୁକ୍ତି
କିଏ କରେ ତୁମ ପୂଜା ଆରାଧନା
କିଏ ବା କରଇ ଭକ୍ତି
ତୁମେ ଅନ୍ତର୍ଯ୍ୟାମୀ ଅନ୍ତର କଥା ତ ସଭିଙ୍କ ଜାଣୁଛ ମୋ କଥା ବେଳକୁ
ନିରବ ରହୁଛ କାହିଁ ।୨।



ଛନ୍ଦାଚରଣ ! ତୁମ୍ ପାଖେ ଗଲି ଶରଣ
ଯେତେଦିନ ଥିବି ଏଠି          ତୁମ୍ ନାମ ଗାଉଥିବି
ଲଗାଇ ମୋ ମନ ପରାଣ ।୦।

ଏତେ ବଡ଼ ଦୁନିଆରେ
ଲଗାଇଛ ଭେଳିକି
କିଏ ଏଠି ହସୁଥାଏ
କିଏ ମରେ କାନ୍ଦିକି
ହସ କାନ୍ଦ ଲୁହଭରା ଦୁନିଆରେ କାହିଁ ହନ୍ତସନ୍ତ ହୁଏ ଅକାରଣ ।୧।

ତୁମେ ତ ଗଢ଼ିଛ ଏଠି
ଦେବତା ଓ ଦାନବ
କିଏ ଏଠି ଧନୀ ପୁଣି
କିଏ ହୁଏ ଗରିବ
ଧନ ମାନ ଯଶ ଗଉରବ ସବୁତ ଦେଇଛ ହେଲେ କାହିଁ କର ହଇରାଣ ।୨।



କେଉଁ ରୂପେ ପ୍ରଭୁ ଦେବ ଦରଶନ
କହିଦିଅ ମୋତେ ଥରେ
କେଉଁ ନାମ ଧରି ଡାକିବି ତୁମକୁ
କରୁଣା କର ମୋ ଠାରେ ।୦।

ଯୁଆଡ଼େ ମୁଁ ଯାଏ ଯୁଆଡ଼କୁ ଚାହେଁ
ସବୁଠି ତୁମର ଯଶଗାନ
ପାରେ ନାହିଁ ଜାଣି ତୁମରି ଭିଆଣ
କରିବାକୁ ନିଜ ସମର୍ପଣ
ତୁମେ ହୁଅ ବଂଧୁ ଆହେ ଜଗବଂଧୁ, ନିବେଦୁଛି ତୁମ ପାଦତଳେ ।୧।

ବିଷ୍ଣୁରୂପେ ଦେଖାଦେଲ ସତ୍ୟଯୁଗେ
ତ୍ରେତାରେ ହୋଇଲ ତୁମେ ରାମ
ଦ୍ୱାପରରେ କୃଷ୍ଣ ହୋଇଥିଲ ପ୍ରଭୁ
କଳିଯୁଗେ ଜଗନ୍ନାଥ ନାମ
ଦରଶନ ଥରେ ଦିଅ ମୋତେ ପ୍ରଭୁ, ଏତିକି ସୁଦୟା କର ବାରେ ।୨।



ଥରେ ହେଲେ ମୋତେ ଚାହିଁ ଦେଖ ପ୍ରଭୁ
କେମିତି କାଟୁଛି ଦିନ
ସିଏ ନୁହେଁ ମୋର ଗର୍ବ ଅହଂକାର
ସିଏ ଖାଲି ଅଭିମାନ ।୦।

କିଏ ବା ନ ଜାଣେ ତୁମରି ମହିମା
କିଏ ବା ନକରେ ପୂଜା ଆରାଧନା
କାହାକୁ ଦେଇଛ ଅନ୍ତରେ ଭକତି
କା' ଦେହରେ ଭରି ଦେଇଛ ଶକତି
ସକଳ ସୃଷ୍ଟିର ସ୍ରଷ୍ଟା ତୁମେ ହେ, କର ମୋ ଜୀବନ ଧନ୍ୟ ।୧।

ଲେଖାଇଛି ହାତେ ଭକତିର ଗୀତି
ଭୁଲିନାହିଁ ତୁମ ସ୍ନେହଶ୍ରଦ୍ଧା ପ୍ରୀତି
ତୁମରି କରୁଣା କରନାହିଁ ଊଣା
କେତେ ମୋର ଆଶା କେତେ କଳପନା
ଭରସା କରିଛି ତୁମକୁ ପ୍ରଭୁ, ଦେଇ ମୋର ମନ ପ୍ରାଣ ।୨।



ଯେତେ ଯାହାକରେ ସବୁ ତୁମ ପାଇଁ
କରୁଣା ସାଗର ପ୍ରଭୁ ଭାବଗ୍ରାହୀ
ବିଜେକର ମୋର ହୃଦୟ ମନ୍ଦିରେ
ବେଳ ଗଡ଼ିଯାଏ ଖାଲି ଚାହିଁଚାହିଁ ।୦।

ଜୀବନକୁ ମୁଁ ଯେ କରିଛି ସଳିତା
ଦୀପଜାଳି ହୃଦୟରେ
ଜଳିଜଳି ତାହା ଶେଷ ହେବ କେବେ
କହିଦିଅ ମୋତେ ବାରେ
ଭକତି ଡୋରିରେ ବାଂଧି ରଖିବାକୁ ଇଚ୍ଛା ମୋ ଜଗତ ସାଇଁ ।୧।

କେହିନାହିଁ ନିଜ କା' ଆଗେ କହିବି
ଅଛି ଯେତେ ମନକଥା
କେତେ ବା ଡାକିବି ତୁମକୁ ପ୍ରଭୁ ହେ
ଜୀବନେ ଦେଇଛ ବ୍ୟଥା
ଦୁଃଖ ଦରିଆରୁ ପାରିକର ମୋତେ ନାବଟିଏ ହୋଇଯାଇ ।୨।





କବିତା ଏକ କଳା । କବିର ସୃଜନକଳାର ଅଭିବ୍ୟକ୍ତି କବିତାରେ ପରିସ୍ଫୁଟନ ହୁଏ । କବି ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ ଆଧ୍ୟାତ୍ମିକ ସାଧନା ଓ ସାହିତ୍ୟ କ୍ଷେତ୍ରରେ ଜଣେ ପରିଚିତ ପ୍ରତିଭା । ବୃତ୍ତିରେ ସେ ଜଣେ ଅଧ୍ୟାପକ । ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଦୀର୍ଘ ୩୫ ବର୍ଷ ଅଧ୍ୟାପନା କଲାପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟର ଅଧ୍ୟକ୍ଷ ପଦରୁ ୨୦୧୩ ମସିହାରେ ଅବସର ନେଇଛନ୍ତି । **'ଶ୍ରୀ ଜଗନ୍ନାଥ ଭଜନ ଶତକ'** ହେଉଛି ତାଙ୍କର ସଦ୍ୟତମ ସାହିତ୍ୟ ସୃଷ୍ଟି । ଭାବର ଠାକୁର ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଚରଣକମଳରେ ନିବେଦିତ ଶହେଟି ଭଜନକୁ ନେଇ ପୁସ୍ତକଟି ରଚିତ । ପ୍ରତ୍ୟେକଟି ଭଜନ ଗାୟନ ଉପଯୋଗୀ । ଏହା ପାଠକ ଓ ଗାୟକ ଭିତରେ ଈଶ୍ୱରଙ୍କ ଭକ୍ତି ଭାବମୟ ପରିବେଶ ସୃଷ୍ଟିକରି ତାକୁ ସ୍ୱର୍ଗୀୟ ଆନନ୍ଦରେ ଅଭିଭୂତ କରିବା ସହିତ ମୋକ୍ଷମୁକ୍ତି ଦେବ, ଏହା ନିଃସନ୍ଦେହ । ପୁସ୍ତକଟି ପାଠକୀୟ ସ୍ୱୀକୃତି ଲାଭ କରିବ ବୋଲି ଆଶା ଓ ବିଶ୍ୱାସ ।






**A compilation of poetry by**
*Dr. Gobinda Chandra Dash*
**Athena Books**
**Bhubaneswar-2**
**rkdas.athena@gmail.com**
**₹ : 130 /-**